# ଆଧୁନିକ ସାହିତ୍ୟ ସନ୍ଦର୍ଶନ

ଅଧ୍ୟାପକ—**ଦେବେନ୍ଦ୍ର ମହାନ୍ତ**

ପ୍ରକାଶକ
ଫ୍ରେଣ୍ଡସ୍ ପବ୍ଲିଶର୍ସ



# ଆଧୁନିକ ସାହିତ୍ୟ ସନ୍ଦର୍ଶନ

ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି



ଫ୍ରେଣ୍ଡସ୍ ପବ୍ଲିଶର୍ସ

ପ୍ରକାଶକ :

**ଫ୍ରେଣ୍ଡ୍‌ସ ପବ୍ଲିଶର୍ସ**

ବିନୋଦବିହାରୀ, କଟକ-୨

ଲେଖକ :

**ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି**

ପ୍ରଥମ ପ୍ରକାଶ :

୨୬ ଜାନୁୟାରୀ, ୧୯୬୬

ମୂଲ୍ୟ

**ତିନି ଟଙ୍କା**

**ମୁଦ୍ରଣ:**

**ମେଘମାଳା ପ୍ରେସ୍**

**ଜୋବ୍ରାସାହି..କଟକ-୧**

## —ନିଜକଥା—

ଆଧୁନିକ ଓଡ଼ିଆ ସାହିତ୍ୟର ତିନି ଜଣ ସ୍ରଷ୍ଟାଙ୍କର ସୃଷ୍ଟି-ସମୀକ୍ଷା ଉକ୍ତ ପୁସ୍ତକରେ ଦିଆଯାଇଅଛି । ଏହି ତିନି ଜଣ ସ୍ରଷ୍ଟାଙ୍କର ସାହିତ୍ୟ-ସମୀକ୍ଷା ଯେତେ ବ୍ୟାପକ ଦୃଷ୍ଟିରୁ କରାଯିବାର କଥା, ତାହା ଏଥିରେ ହୋଇପାରି ନାହିଁ । କାରଣ ଏକ ସୀମିତ ପରିସରରେ ଏହାର ସୃଷ୍ଟି । ବିଶ୍ୱବିଦ୍ୟାଳୟରେ ଆଧୁନିକ ସାହିତ୍ୟ ପାଠକରୁଥିବା ଛାତ୍ରଛାତ୍ରୀମାନଙ୍କୁ ଏହା ବିଶେଷ ଭାବରେ ସାହାଯ୍ୟ କରିପାରିବ ବୋଲି ଆଶା-କରେ । ଇତି ।

**ଲେଖକ**

ତା ୧୫ । ୧୨ । ୭୫

ଏଥିରେ ଅଛନ୍ତି—

* କବିବର ରାଧାନାଥ
* ବ୍ୟାସକବି ଫକୀରମୋହନ
* ଉତ୍କଳମଣି ଗୋପବନ୍ଧୁ

# କବିବର ରାଧାନାଥ

## (୧) କାବ୍ୟଯୁଗର ବିଳୟ—

ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ପାଇଁ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କର ଦାନ ଚିରସ୍ମରଣୀୟ । ଅଷ୍ଟାଦଶ ଶତାବ୍ଦୀର କାବ୍ୟ ସାହିତ୍ୟ କ୍ଷେତ୍ରରେ ଉପେନ୍ଦ୍ର ଭଞ୍ଜଙ୍କର ଅପ୍ରତିଦ୍ୱନ୍ଦ୍ୱୀ ପ୍ରଭାବ ଓ ସୃଷ୍ଟି ପ୍ରତିଭାର ଅମର ନିଦର୍ଶନ ହିଁ ତାଙ୍କୁ କବି ସମ୍ରାଟ ରୂପେ ପରିଚିତ କରାଇଥିଲା । ଓଡ଼ିଆ କାବ୍ୟ ସାହିତ୍ୟ ସେତେବେଳେ ପୂରାପୂରି ସଂସ୍କୃତ କାବ୍ୟ ସାହିତ୍ୟର ଆଦର୍ଶକୁ ଅନୁସରଣ କରିଥିଲା । ସେ ସମୟରେ ଯେଉଁ କବିମାନେ କାବ୍ୟସୃଷ୍ଟିରେ ମନପ୍ରାଣ ଢାଳି ଦେଇଥିଲେ ସେମାନଙ୍କର ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଥିଲା । ଉପେନ୍ଦ୍ର, ଯଦୁମଣି, ବଳଦେବ, ଅଭିମନ୍ୟୁ ପ୍ରମୁଖ କବିଗଣଙ୍କର ସଂସ୍କୃତ ସାହିତ୍ୟ ତଥା ଅଳଙ୍କାର ସାହିତ୍ୟରେ ଗଭୀର ପ୍ରବେଶ ଥିଲା । କାବ୍ୟରେ ନାୟକ ନାୟିକାଙ୍କର ପୂର୍ବଜନ୍ମ ବୃତ୍ତାନ୍ତ, ଜନ୍ମ, ବାଲ୍ୟ, ଯୌବନାଦିର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା, ପ୍ରେମ, ବିରହ ମିଳନ ପ୍ରଭୃତିର ଶୃଙ୍ଗାର ରସାଶ୍ରିତ ବର୍ଣ୍ଣନା ସେତେବେଳେ ପାଠକ ସମାଜକୁ ଆନନ୍ଦ ପ୍ରଦାନ

କରିଥିଲା । ଅଷ୍ଟାଦଶ ଶତାବ୍ଦୀର ପୂର୍ବ ଯୁଗର ସାହିତ୍ୟରେ ଧର୍ମ ମତେ ଯେପରି ସାହିତ୍ୟର ପ୍ରାଣ କେନ୍ଦ୍ର ଥିଲା । ମାତ୍ର ଅଷ୍ଟାଦଶ ଶତାବ୍ଦୀରେ ସାହିତ୍ୟ ଧର୍ମ ମନୋଭାବକୁ ଦୂର କରି କବିତ୍ୱ ଶୃଙ୍ଖଳା ପ୍ରଦର୍ଶନ କରିବାକୁ ବିଶେଷ ଭାବରେ ସମର୍ଥ ହେଲା । ତେଣୁ ସେ ସମୟରେ ରାଧାକୃଷ୍ଣ ବା ରାମ ସୀତାଙ୍କର ଜୀବନ କାହାଣୀକୁ ଅବଲମ୍ବନ କରି କାବ୍ୟ ସାହିତ୍ୟ ବିଶେଷ ଭାବରେ ଖ୍ୟାତିସମ୍ପନ୍ନ ନ ହେବାରୁ କାଳ୍ପନିକ କାବ୍ୟର ଆଦର ବଢ଼ିଥିଲା । ଉପମା, ରୂପକ, ଅନୁପ୍ରାସ, ଯମକାଦିର ପ୍ରୟୋଗରେ ସାହିତ୍ୟର ରସ ଆସ୍ୱାଦନ ସତେ ଯେପରି ପଣ୍ଡିତ ବା ବିଦଗ୍ଧ ଶ୍ରେଣୀ ନିମିତ୍ତ ଉଦ୍ଦିଷ୍ଟ ଥିଲା । ତେଣୁ କବି ଉପେନ୍ଦ୍ର ଘୋଷଣା କରିଥିଲେ ଯେ ତାଙ୍କ ସାହିତ୍ୟକୁ କେବଳ "ଅର୍ଥୀଜନ" ମାନେ ଉପଭୋଗ କରିପାରିବେ । ଖଳ ଲୋକେ ତାଙ୍କ ସାହିତ୍ୟରୁ କୌଣସି ରସ ଆସ୍ୱାଦନ କରିପାରିବେ ନାହିଁ । ଯଦି କୌଣସି ଖଳ ଲୋକ ଉପେନ୍ଦ୍ର ସାହିତ୍ୟ ପାଠକରେ ତେବେ ତାର ପ୍ରୟାସ ବ୍ୟର୍ଥତାରେ ପରିଣତ ହେବ । ଗଧ ଆମ୍ବ ବଉଳ ଖାଇ ତାର ଗଳା ପରିଷ୍କାର କରିବାପାଇଁ ଯଦି ଚେଷ୍ଟିତ ହୁଏ ତେବେ ତାର ପରିଣାମ ଯାହା, ମୂର୍ଖଲୋକ ଭଞ୍ଜ ସାହିତ୍ୟ ପାଠକରି ରସ ଆସ୍ୱାଦନ କରିବାକୁ ଚେଷ୍ଟିତ ହେଲେ ତାର ପରିଣାମ ତାହା ହିଁ ହେବ । ଉପେନ୍ଦ୍ର ଭଞ୍ଜ ଏହିପ୍ରକାର ଅନେକ ଉକ୍ତି ମଧ୍ୟରେ ତାଙ୍କ ସାହିତ୍ୟର ଗ୍ରାହକ ଶ୍ରେଣୀ ନିର୍ଦ୍ଦିଷ୍ଟ କରି ଦେଇଅଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ସମସାମୟିକ ତଥା ପରବର୍ତ୍ତୀ କବିଗଣ ଏ ପ୍ରକାର ଉକ୍ତି ପ୍ରଦାନ କରି ନ ଥିଲେ ହେଁ ଉପେନ୍ଦ୍ରଙ୍କ କାବ୍ୟାଦର୍ଶକୁ ପୂର୍ଣ୍ଣମାତ୍ରାରେ ଅନୁସରଣ କରିଅଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କର ଲାବଣ୍ୟବତୀ, ଯଦୁମଣିଙ୍କର ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଓ ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣି ଏହାର ଜ୍ୱଳନ୍ତ ପ୍ରମାଣ ।

ଅଷ୍ଟାଦଶ ଶତାବ୍ଦୀର ସାହିତ୍ୟ କ୍ଷେତ୍ରରେ ଆଉ ଗୋଟିଏ କଥା ଲକ୍ଷ୍ୟ କରିବାର ଅଛି । ତାହା ହେଉଛି ସେ ଯୁଗର ସାହିତ୍ୟର ସାଙ୍ଗୀତିକ ମୂଲ୍ୟ । ଉପେନ୍ଦ୍ର ଭଞ୍ଜଙ୍କର ରଚନାକୁ ହୃଦୟଙ୍ଗମ କରିବା ପଣ୍ଡିତମାନଙ୍କ ପକ୍ଷରେ କେବଳ ସମ୍ଭବ ହେଲେ ହେଁ ଓଡ଼ିଶାର ସମସ୍ତ ଶ୍ରେଣୀର ଲୋକମାନଙ୍କ ନିକଟରେ ଏହା ଆଦୃତ ହୋଇଥିଲା । ଅର୍ଥ ନ ବୁଝିଲେ ହେଁ ସେ କୌଣସି ଲୋକ ଛାନ୍ଦ ଚଉପଦୀ ଇତ୍ୟାଦିକୁ ସଙ୍ଗୀତ ଭାବରେ ଗାନ କରି ଆନନ୍ଦ ଲାଭ କରୁଥିଲା । କେବଳ ଉପେନ୍ଦ୍ରଙ୍କ ରଚନା ନୁହେଁ, ଯଦୁମଣି, କବିସୂର୍ଯ୍ୟ, ଅଭିମନ୍ୟୁ ପ୍ରମୁଖ ଅନ୍ୟ କବିମାନଙ୍କ ରଚନା ମଧ୍ୟ ଏହି ରୀତିରେ ସାଧାରଣ ସମାଜରେ ଆଦୃତ ହେଉଥିଲା । ପାଲା, ଦାସକାଠିଆ, ଗୋଟିପୁଅ ନାଚ ପ୍ରଭୃତି ଅନୁଷ୍ଠାନରେ ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ଏହି ଦୃଷ୍ଟିରୁ ଖ୍ୟାତି ଲାଭ କରିଅଛି ।

ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ କାବ୍ୟ ସାହିତ୍ୟରେ ରାଧାକୃଷ୍ଣ ବା ରାମ ସୀତାଙ୍କ ଜୀବନଗାଥାକୁ ଅବଲମ୍ବନ କରି ଧର୍ମମତବାଦ ଯେ ପ୍ରକାଶ ପାଇନାହିଁ, ତାହା ନୁହେଁ; ମାତ୍ର ଧର୍ମ ମତବାଦ ପ୍ରକାଶ ଅପେକ୍ଷା ଏ ପ୍ରକାର କାବ୍ୟମାନଙ୍କରେ କାବ୍ୟର ସାହିତ୍ୟିକ ମୂଲ୍ୟ ବା କବିର ପାଣ୍ଡିତ୍ୟ ପ୍ରକାଶ ଲାଗି ଅଧିକ ଦୃଷ୍ଟି ଦିଆଯାଇଅଛି । ଦୀନକୃଷ୍ଣଙ୍କର ରସ କଲ୍ଲୋଳ, ଉପେନ୍ଦ୍ରଙ୍କର ବୈଦେହୀଶ ବିଳାସ, କଳାକଉତୁକ, ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣି, ଯଦୁମଣିଙ୍କର ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର, କବିସୂର୍ଯ୍ୟଙ୍କର କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ଏହି ଉକ୍ତିର ସପକ୍ଷରେ ଏକ ଏକ ଅମର ନିଦର୍ଶନ ବୋଲି ମନେହୁଏ ।

ଅଷ୍ଟାଦଶ ଶତାବ୍ଦୀର କାବ୍ୟ ସାହିତ୍ୟରେ ଅଶ୍ଳୀଳତା ଏତେ ମାତ୍ରାରେ ପୂରି ରହିଛି ଯେ ଅଧିକାଂଶ ସମୀକ୍ଷକ ଏଥିପାଇଁ ଏହି ସାହିତ୍ୟକୁ ଦୋଷଦୁଷ୍ଟ ବୋଲି ମନେ କରନ୍ତି । ଏପରି ମନେ କରିବା ନିତାନ୍ତ ଯୁକ୍ତିସଙ୍ଗତ । କାରଣ ସଂସ୍କୃତ କାବ୍ୟାଦର୍ଶର ଅନୁରୋଧରେ କେଳିଗୃହର ବର୍ଣ୍ଣନା ଓଡ଼ିଆ କାବ୍ୟ ସାହିତ୍ୟରେ ଯେତିକି ଅଶ୍ଳୀଳତା ପ୍ରଦର୍ଶନ କରେ କାବ୍ୟର ଅନେକ ପରିସରରେ ପ୍ରାସଙ୍ଗିକ ଭାବରେ ଯୌନ ବର୍ଣ୍ଣନା ତା ଠାରୁ କମ୍ ଅଶ୍ଳୀଳ ନୁହେଁ । ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟରେ ଅଶ୍ଳୀଳ ବର୍ଣ୍ଣନାକୁ ଲକ୍ଷ୍ୟ କରି ସ୍ୱର୍ଗତଃ ବିଜୟଚନ୍ଦ୍ର ମଜୁମଦାର ଯେଉଁ ମତ ପ୍ରଦାନ କରିଥିଲେ, ସେ ମତକୁ ଖଣ୍ଡନ କରିବାକୁ ଯାଇ ସ୍ୱର୍ଗତଃ ଆର୍ତ୍ତବଲ୍ଲଭ ମହାନ୍ତି ଅନେକ ଯୁକ୍ତି ଉପସ୍ଥାପିତ କରିଅଛନ୍ତି । ମାତ୍ର ଯେତେ ଯୁକ୍ତି ପ୍ରଦର୍ଶନ କଲେହେଁ ଭଞ୍ଜ ସାହିତ୍ୟକୁ ଏ ଦୋଷରୁ ମୁକ୍ତ କରାଯାଇ ନ ପାରେ । ସ୍ୱର୍ଗତଃ ବିଜୟଚନ୍ଦ୍ର ମଜୁମଦାରଙ୍କ ଦୃଷ୍ଟିକୋଣ ଆର୍ତ୍ତବଲ୍ଲଭଙ୍କର ବୋଧଗମ୍ୟ ହୋଇ ପାରିନାହିଁ । ବିଜୟଚନ୍ଦ୍ରଙ୍କର ବ୍ରାହ୍ମବାଦୀ ନିର୍ମଳ ଦୃଷ୍ଟିକୋଣ ନିକଟରେ ଆର୍ତ୍ତବଲ୍ଲଭଙ୍କର ସାହିତ୍ୟିକ ଦୃଷ୍ଟିକୋଣ ହୀନପ୍ରଭ ହୋଇ ପଡ଼ିଛି । ସତ୍ୟକୁ ଯୁକ୍ତିର ଜାଲରେ କେବେହେଲେ ଅସ୍ୱୀକାର କରାଯାଇ ନ ପାରେ ।

ଅଷ୍ଟାଦଶ ଶତାବ୍ଦୀର କାବ୍ୟ ସାହିତ୍ୟ ଯେତେବେଳେ ଏହିପରି ଏକ ପରମ୍ପରା ସୃଷ୍ଟି କରି ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ସଂପାଦନ ଉଦ୍ଦେଶ୍ୟରେ ଗତିମୁଖର, ଠିକ୍ ସେତିକବେଳେ ଏ ଦେଶର ଜନସମାଜରେ ଏକ ଅଭୂତପୂର୍ବ ପରିବର୍ତ୍ତନର ସୂତ୍ରପାତ ହେଲା । ଦୀର୍ଘକାଳ ଧରି ସଂଖ୍ୟାଗରିଷ୍ଠ ଲୋକମାନଙ୍କୁ ସାହିତ୍ୟ-ରସ ଆସ୍ୱାଦନ କରିବାରୁ ବଞ୍ଚିତ କରି କେବଳ ପଣ୍ଡିତ ଶ୍ରେଣୀଙ୍କୁ ଆନନ୍ଦ ଦାନ

କରି ଓଡ଼ିଆ କାବ୍ୟ ସାହିତ୍ୟ ତାର ମର୍ଯ୍ୟାଦା ରକ୍ଷା କରି ପାରିଲା ନାହିଁ । ପାଠକ ସମାଜର ରୁଚି ପରିବର୍ତ୍ତନର ସୂଚନା ଦେଖାଦେବା ସଙ୍ଗେ ସଙ୍ଗେ ଓଡ଼ିଆ କାବ୍ୟ ସାହିତ୍ୟ ଧୀର ମନ୍ଥର ଗତିରେ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲା । ଊନବିଂଶ ଶତାବ୍ଦୀରେ ଏ ଦେଶର ଶାସନ କ୍ଷେତ୍ରରେ ଯେଉଁ ଆମୂଳ ପରିବର୍ତ୍ତନ ଦେଖାଦେଲା, ତାହା କାବ୍ୟ ସାହିତ୍ୟର ପତନ ପାଇଁ ଅନେକ ପରିମାଣରେ ଦାୟୀ । ଊନବିଂଶ ଶତାବ୍ଦୀରେ ଇଂରେଜମାନଙ୍କର ଆଗମନ ଫଳରେ ଏ ଦେଶର ବାୟୁମଣ୍ଡଳ ଏକ ଅଭିନବ ବାୟୁ ପ୍ରବାହକୁ ସ୍ୱାଗତ ଜଣାଇଲା ।

## ( ୨ ) ଆଧୁନିକ ଯୁଗର ପୃଷ୍ଠଭୂମି—

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ( ୧୮୦୩ ) ଇଂରେଜମାନେ ଏ ଦେଶରେ ନିଜର ଆଧିପତ୍ୟ ବିସ୍ତାର କଲେ । ଇଂରେଜମାନେ ଓଡ଼ିଶା ଅଧିକାର କରିବାର ପଚାଶ ବର୍ଷ ପୂର୍ବରୁ ବଙ୍ଗଳା ଅଧିକାର କରି ସାରିଥିଲେ । ଓଡ଼ିଶା ପ୍ରଭୃତି ଭାରତର ଅନ୍ୟାନ୍ୟ ଅଂଶଆଡ଼କୁ ଅଗ୍ରସର ହେବା ପୂର୍ବରୁ ବଙ୍ଗଦେଶ ହିଁ ସେମାନଙ୍କର ଭାରତ ଶାସନର ମୂଳଦୁଆ ପକାଇଛି । ଇଂରେଜ-ମାନଙ୍କ ସଂସ୍ପର୍ଶରେ ଆସି ବଙ୍ଗଳାର ଜନସାଧାରଣ ପ୍ରଥମେ ଆଧୁନିକ ରୁଚି ପ୍ରତି ଆକୃଷ୍ଟ ହୋଇଅଛନ୍ତି । ଇଂରେଜ ସଭ୍ୟତା ଦ୍ୱାରା ଅନୁପ୍ରାଣିତ ଆଧୁନିକ ଶିକ୍ଷାର ଧାରାରେ ଶିକ୍ଷିତ ବଙ୍ଗବାସୀମାନେ ତେଣୁ ପ୍ରଥମରେ ଓଡ଼ିଶାର ଶାସନ କ୍ଷେତ୍ରରେ ସ୍ଥାନ ଅଧିକାର କରି ବସିଛନ୍ତି । ସେତେବେଳେ ଓଡ଼ିଶାରେ ଜଣେ କାହାକୁ ଶିକ୍ଷିତ ବ୍ୟକ୍ତି କହିଲେ ସତେ ଯେପରି ତାହା ଯେ କୌଣସି ବଙ୍ଗୀୟ ବ୍ୟକ୍ତିଙ୍କୁ ବୁଝାଉଥିଲା । ସରକାରୀ ଶାସନ କଳରେ ଆମଲାଠାରୁ

ଆରମ୍ଭ କରି ଉତ୍କଳ ପର୍ଯ୍ୟନ୍ତ ସମସ୍ତେ ଥିଲେ ବଙ୍ଗବାସୀ । ସେତେବେଳର ଓଡ଼ିଆ ଭଲ କରି ପଦେ କଥା କହିବାର ଯୋଗ୍ୟତା ହାସଲ କରି ନ ଥିବା କଥା ସେହି ବଙ୍ଗବାସୀ କର୍ମଚାରୀମାନଙ୍କ ମତରୁ ଜଣାଯାଏ । ଓଡ଼ିଶାବାସୀଙ୍କର ଶିକ୍ଷାର ପରିସର ସେତେବେଳେ ଚାଟଶାଳୀ ମଧ୍ୟରେ ଆବଦ୍ଧ ଥିଲା । ଯେ କୌଣସି ଓଡ଼ିଆ ଟଙ୍କା ଅଣା ପଇସା ହିସାବ, ପଣିକିଆ, ଓଡ଼ିଆଙ୍କ ଓ ଭାଗବତ ବୋଲି ଜାଣିଲେ ନିଜର ଶିକ୍ଷାଲାଭ ଶେଷ ହୋଇଗଲା ବୋଲି ଧରି ନେଉଥିଲା ।

ନୂଆକରି ଦେଶକୁ ଅଧିକାର କରିଥିବା ବିଦେଶୀ ଶାସକଗୋଷ୍ଠୀ ନିକଟରେ ସେତେବେଳର ଏହି ତଥାକଥିତ ଶିକ୍ଷିତ ଓଡ଼ିଆର ସ୍ଥାନ ଆଦୌ ନ ଥିଲା କହିଲେ ଚଳେ । ସେ ଯାହାହେଉ, ଇଂରେଜ ଶାସନ ପ୍ରତିଷ୍ଠିତ ହେବା ପରେ ଏ ଦେଶର ଶିକ୍ଷାକ୍ଷେତ୍ରରେ କ୍ରମେ ପରିବର୍ତ୍ତନର ସୂତ୍ରପାତ ହେଲା । ପୁରାତନ କାଳର ଭାଗବତ, ଗୋପୀଭାଷା, ରାସକ୍ରୀଡ଼ା ପ୍ରଭୃତିର ସ୍ଥାନ ପୂରଣ କଲା ଆଧୁନିକ ଜଗତର ନୂଆ ନୂଆ କଥା । ଗାଁ ଚାଟଶାଳୀ ପରିବର୍ତ୍ତେ ପ୍ରାଥମିକ ବିଦ୍ୟାଳୟରେ ରେଲ, ମଟର, ଉଡ଼ାଜାହାଜ ପ୍ରଭୃତି ବିଷୟରେ ଲିଖିତ ପାଠ୍ୟପୁସ୍ତକ ପ୍ରଚଳିତ ହେଲା । ଏହାଦ୍ୱାରା ଶିଶୁର ଜ୍ଞାନ ବିକାଶ ନିମିତ୍ତ ଯେତିକି ଯତ୍ନ ନିଆଗଲା, ଆଧୁନିକ ଜଗତର ନୂତନ ନୂତନ ବସ୍ତୁ ସହିତ ଶୈଶବାବସ୍ଥାରୁ ଏ ଦେଶର ଭବିଷ୍ୟତ ବଂଶଧରମାନଙ୍କୁ ପରିଚିତ ତଥା ଅଭ୍ୟସ୍ତ କରାଇବାପାଇଁ ତା'ଠାରୁ ଅଧିକ ଯତ୍ନ ନିଆଗଲା । ତେଣୁ ପ୍ରାଥମିକ ଶିକ୍ଷାଠାରୁ ଆରମ୍ଭ କରି ଏଣ୍ଟ୍ରାନ୍ସ ପର୍ଯ୍ୟନ୍ତ ଯେଉଁ ନୂତନ ପଦ୍ଧତିରେ ଶିକ୍ଷାଦାନ କରାଗଲା ତାହା ଇଂରେଜ ସରକାରଙ୍କର ଶିକ୍ଷା କ୍ଷେତ୍ରରେ

ସଂସ୍କାର ଆନୟନ କରିବା ପ୍ରୟାସର ଫଳ । ଯେତେବେଳେ ଏ ଦେଶରେ ନୂଆହୋଇ ହାଇସ୍କୁଲ ପ୍ରତିଷ୍ଠା କରାଯାଏ, ସେତେବେଳେ ପାଠ ପଢ଼ିବା ଛାତ୍ରଙ୍କର ସଂଖ୍ୟା ନିତାନ୍ତ କମ୍ । ସେତେବେଳେ ଏଣ୍ଟ୍ରାନ୍‌ସ୍ ପାସ୍ କରିବା ଏପରି କଷ୍ଟ ସାଧ ଥିଲା ଯେ ଯେଉଁଛାତ୍ର ଏଣ୍ଟ୍ରାନ୍‌ସ୍ ପାସ୍ କରୁଥିଲା ତାକୁ ଦେଖିବାକୁ ଲୋକମାନେ ଦଉଡ଼ି ଆସୁଥିଲେ ।

ସେତେବେଳର ଆଧୁନିକ ଶିକ୍ଷାଫଳରେ ଯେଉଁ ସ୍ୱଳ୍ପ ମୁଷ୍ଟିମେୟ ମଧ୍ୟବିତ୍ତ ଶିକ୍ଷିତ ଶ୍ରେଣୀର ସୃଷ୍ଟି ହେଲା ସେମାନେ ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟି ପଥରେ ଯଥେଷ୍ଟ ଭାବରେ ସାହାଯ୍ୟ କରିଅଛନ୍ତି । ମୁଖ୍ୟତଃ ସେହିମାନେ ହିଁ ଆଧୁନିକ ଯୁଗର ଜନକ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟ ବିଷୟରେ ବିଚାର କରିବାକୁ ହେଲେ ଆମକୁ ଗ୍ରହଣ କରିନେବାକୁ ହେବ ଯେ ଆମର ଆଧୁନିକ ସାହିତ୍ୟର ସୃଷ୍ଟି ପ୍ରକୃତରେ ୧୮୮୦ ସାଲଠାରୁ ହୋଇଅଛି । ୧୮୮୦ ସାଲ ପୂର୍ବରୁ ଯାହା ଓଡ଼ିଆ ଭାଷାରେ ରଚନା କରାଯାଇଥିଲା ତାହା ପ୍ରାୟତଃ ପାଠ୍ୟ ପୁସ୍ତକ କହିଲେ ଚଳେ । ତେଣୁ ୧୮୮୦ ସାଲ ହିଁ ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗସ୍ଥାପନାର ପ୍ରକୃଷ୍ଟ କାଳ । ପୁଣି ଇତିହାସଗତ ଦୃଷ୍ଟିରୁ ବିଚାର କଲେ ଏହି ସାହିତ୍ୟକୁ ଆଧୁନିକ ଓଡ଼ିଆ ସାହିତ୍ୟ ନ କହି "ଗତ ଦେଢ଼ଶହ ବର୍ଷର ଓଡ଼ିଆ ସାହିତ୍ୟ" ବା "ଇଂରେଜ ଶାସନ କାଳର ଓଡ଼ିଆ ସାହିତ୍ୟ" କହିଲେ ଅଧିକ ଯୁକ୍ତିଯୁକ୍ତ ହେବ ।

୧୮୦୩ ସାଲରେ ଯେତେବେଳେ ଇଂରେଜ ସରକାର ଏ ଦେଶକୁ ଅଧିକାର କଲେ ସେତେବେଳେ ଓଡ଼ିଶା କହିଲେ କେବଳ କଟକ, ପୁରୀ ଓ ବାଲେଶ୍ୱରକୁ ବୁଝାଉଥିଲା । ଓଡ଼ିଶାର ଅନେକ

ଅଂଶ ସେତେବେଳେ ଗଡ଼ଜାତ ଓ ମାନ୍ଦ୍ରାଜ ପ୍ରଦେଶ ସହିତ ମିଶି ରହିଥିଲା । କେବଳ କଟକ, ପୁରୀ ଓ ବାଲେଶ୍ୱରରେ ଓଡ଼ିଶାକୁ ସୀମିତ କରିଦେଇ ଅନେକ ଓଡ଼ିଆଭାଷୀ ଲୋକଙ୍କୁ ବାହାରେ ଛାଡ଼ି ଦିଆଗଲା । ୧୮୦୪ ସାଲରେ ଓଡ଼ିଶାର ଜମିଜମା ବନ୍ଦୋବସ୍ତ ହେଲା । ମୁଖ୍ୟତଃ କଲିକତାରେ କମ୍ପାନୀ ସରକାରର ଶାସନକଳ ଥିଲା । ତେଣୁ କଲିକତାରେ ଓଡ଼ିଶାର ଜମିଦାରୀ ନିଲାମ ହେଲା । ଫଳରେ ଓଡ଼ିଶାର ଜମିଦାରୀଗୁଡ଼ିକ ଦଖଲ କଲେ ବଙ୍ଗବାସୀ ଅଭିଜାତ ଗୋଷ୍ଠୀ । ପୁଣି ୧୮୦୪ ସାଲରେ ଯେତେବେଳେ ଓଡ଼ିଶାରେ ଶାସନକଳ ପ୍ରତିଷ୍ଠିତ ହେବାକୁ ଯାଏ ସେତେବେଳେ କମ୍ପାନୀ ସରକାର ବଙ୍ଗଳାରୁ କର୍ମଚାରୀ ଆଣି ଓଡ଼ିଶାରେ ନିଯୁକ୍ତ କଲେ । ଏପରିକି ୧୮୬୧ ସାଲ ପର୍ଯ୍ୟନ୍ତ ଓଡ଼ିଆମାନେ ସରକାରୀ ଚାକିରି କରିବା ନିମିତ୍ତ ନିଜକୁ ଯୋଗ୍ୟ କରିପାରି ନ ଥିଲେ । ତେଣୁ ଓଡ଼ିଆମାନେ ସରକାରୀ ଚାକିରିରୁ ବଞ୍ଚିତ ହେଲେ ଓ ସେତେବେଳର ଓଡ଼ିଶା ବଙ୍ଗଳାର ଏକ ଅଧୀନସ୍ଥ ପ୍ରଦେଶ ହୋଇ ରହିଲା । ଓଡ଼ିଆ ଭାଷା ନ ଜାଣି ମଧ୍ୟ ସରକାରୀ କର୍ମଚାରୀମାନେ ଓଡ଼ିଶାର ଶାସନକଳ ମାଡ଼ି ବସିଲେ । ତେଣୁ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଏ ଦେଶରେ ପ୍ରଭୁତ୍ୱ ବିସ୍ତାର କରିଛନ୍ତି କେବଳ ଅଣଓଡ଼ିଆମାନେ ।

ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରଚଳନ ଓ ପ୍ରତିଷ୍ଠା ପରେ ଓଡ଼ିଆମାନେ ନିଜକୁ ଯୋଗ୍ୟବୋଲି ପ୍ରମାଣିତ କରିବା ପର୍ଯ୍ୟନ୍ତ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ ଓ ସମୃଦ୍ଧି ଦୃଷ୍ଟିଗୋଚର ହୋଇ ନାହିଁ । ୧୮୭୦ ସାଲଠାରୁ ଓଡ଼ିଶାରେ ପ୍ରକୃତରେ ଆଧୁନିକ ଶିକ୍ଷାର ପ୍ରସାର ଘଟିଅଛି । ଏହି ଆଧୁନିକ ଶିକ୍ଷାର ପ୍ରସାର ଫଳରେ

ଆଧୁନିକ ସାହିତ୍ୟର ବିକାଶ ସମ୍ଭବ ହୋଇ ପାରିଅଛି । ଆଧୁନିକ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଶ୍ରେଷ୍ଠ ବଡ଼ ଅନେକ ସ୍ରଷ୍ଟା ଥିଲେ ହେଁ ଆମ ଆଗରେ ମୁଖ୍ୟଭାବରେ ତିନିଜଣ କବି ବା ଲେଖକଙ୍କର ପରିଚୟ ଅତ୍ୟନ୍ତ ସ୍ପଷ୍ଟ । ଏହି ତିନିଜଣ ହେଉଛନ୍ତି ରାଧାନାଥ, ମଧୁସୂଦନ ଓ ଫକୀର ମୋହନ । ଏହି ତିନିଜଣ କବି ବା ଲେଖକ ଆଧୁନିକ ଯୁଗର କର୍ଣ୍ଣଧାର ହେଲେହେଁ ଆଧୁନିକ ଯୁଗସ୍ରଷ୍ଟାର ଗୌରବ ପାଇଛନ୍ତି କବିବର ରାଧାନାଥ । ଏହି ତିନିଜଣ କବି ବା ଲେଖକ ଗୋଟିଏ ସମୟରେ ସାହିତ୍ୟ ସୃଷ୍ଟି କରିଥିଲେ ହେଁ ତିନିଜଣଙ୍କର ସୃଷ୍ଟିର ପ୍ରକୃତି ଭିନ୍ନ ଭିନ୍ନ ପଥରେ ଅଗ୍ରସର ହୋଇଅଛି । ରାଧାନାଥଙ୍କର ଦୃଷ୍ଟିପଥ ପଶ୍ଚିମକୁ, ମଧୁସୂଦନଙ୍କର ପ୍ରାଚ୍ୟକୁ ଓ ଫକୀର ମୋହନଙ୍କର ଦୃଷ୍ଟି ମୁଖ୍ୟତଃ ସମୟ ଓ ସମାଜ ଆଡ଼କୁ । ରାଧାନାଥଙ୍କର ପାଣ୍ଡିତ୍ୟ ହିଁ ରାଧାନାଥଙ୍କର ବୈଶିଷ୍ଟ୍ୟ । ବିଭିନ୍ନ ଭାଷାର ବିଭିନ୍ନ ଗ୍ରନ୍ଥ ଅଧ୍ୟୟନ, ବିଶେଷତଃ ପାଶ୍ଚାତ୍ୟ ଗ୍ରନ୍ଥ ଅଧ୍ୟୟନ ତାଙ୍କ ବହୁମୁଖୀ ପ୍ରତିଭା ବିକାଶ ନିମିତ୍ତ ବିଶେଷ ସହାୟକ ହୋଇଥିଲା । ତାଙ୍କର କାବ୍ୟଗୁଡ଼ିକର କଥାବସ୍ତୁ ଅଧିକାଂଶ ଗ୍ରୀକ୍ ସାହିତ୍ୟର କଥାବସ୍ତୁ ଉପରେ ନିର୍ଭର କରିଅଛି । ପାଶ୍ଚାତ୍ୟ ଚିନ୍ତାଧାରା ସହିତ ପରିଚିତ ନ ହେଲେ ତାଙ୍କ ସାହିତ୍ୟର ସ୍ୱରୂପ ନିର୍ଣ୍ଣୟ କରିବା ଆୟାସ ସାଧ୍ୟ । ତେଣୁ ରାଧାନାଥଙ୍କ ସୃଷ୍ଟିର ପ୍ରେରଣା ଭାରତୀୟ ସାହିତ୍ୟ ନୁହେଁ । ମଧୁସୂଦନ ପ୍ରାଚୀନ ହିନ୍ଦୁ ଧର୍ମ ଶାସ୍ତ୍ର ସବୁ ଅନୁଶୀଳନ କରି ଦାର୍ଶନିକ ଚିନ୍ତାଧାରା ସମ୍ବଳିତ ସାହିତ୍ୟ ସୃଷ୍ଟି କଲେ । ମାତ୍ର ଫକୀରମୋହନ ତାଙ୍କର ସମୟ ଓ ସମାଜ ପ୍ରତି ଦୃଷ୍ଟି ନିକ୍ଷେପ କଲେ । ଫକୀର ମୋହନଙ୍କର ସାମସାମୟିକ ସମାଜକୁ ନ ଜାଣିଲେ ତାଙ୍କ ସାହିତ୍ୟର ସ୍ୱରୂପ ନିର୍ଣ୍ଣୟ କରିବା ସହଜ ନୁହେଁ ।

## ( ୩ ) ଆଧୁନିକ ଯୁଗର ବୈଶିଷ୍ଟ୍ୟ—

ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ସମୟ ନିରୂପଣ ବିଷୟରେ ମତଦ୍ୱୈଧ ଦେଖାଯାଏ । ପ୍ରକୃତ ପକ୍ଷରେ ଦେଖିବାକୁ ଗଲେ ୧୮୮୦ ସାଲଠାରୁ ଆଧୁନିକ ସାହିତ୍ୟର ସୃଷ୍ଟି ହୋଇଅଛି । ୧୮୮୦ ସାଲ ପୂର୍ବରୁ ଯାହାସବୁ ସୃଷ୍ଟି ହୋଇଅଛି ତାହା ପାଠ୍ୟପୁସ୍ତକ ସୀମା ମଧ୍ୟରେ ଆବଦ୍ଧ । ସେ ସବୁକୁ ସାହିତ୍ୟ ବୋଲି ନିର୍ଭୁଲ ଭାବରେ କହିହେବ ନାହିଁ । ଆଧୁନିକ ଯୁଗର କେତେଗୋଟି ବିଶିଷ୍ଟ ଲକ୍ଷଣ ଏଠାରେ ପ୍ରଣିଧାନର ବିଷୟ ।

### ( ୧ ) କାବ୍ୟର ବିଷୟବସ୍ତୁ—

ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ କାବ୍ୟର ବିଷୟବସ୍ତୁ ମୁଖ୍ୟତଃ ରାଧାକୃଷ୍ଣ ବା ରାମ ସୀତାଙ୍କ ପ୍ରେମମୂଳକ ବର୍ଣ୍ଣନାରେ ଗଠିତ ଥିଲା । ଉପେନ୍ଦ୍ରଭଞ୍ଜଙ୍କ ସମୟରେ ଏହା ପରିବର୍ତ୍ତିତ ହୋଇ ରାଜା ରାଣୀଙ୍କ ପ୍ରେମ ବର୍ଣ୍ଣନାରେ ସୀମିତ ହେଲା । ମାତ୍ର ଆଧୁନିକ ଯୁଗର କାବ୍ୟର କଥାବସ୍ତୁ ପୂର୍ବବର୍ତ୍ତୀ ଯୁଗମାନଙ୍କ ପରି ଏକ ଦେଶଦର୍ଶୀ ହୋଇ ରହିଲା ନାହିଁ । ଦେଶ ପ୍ରେମ, ଜାତୀୟଭାବର ଜାଗରଣ, ଗଣଚେତନା, ଦେଶାତ୍ମବୋଧ ପ୍ରଭୃତି ଭାବଧାରା ପ୍ରେମର ବହୁମୁଖୀ ବର୍ଣ୍ଣନା ଜରିଆରେ ପ୍ରକାଶ ପାଇଥିଲା । ସାହିତ୍ୟ ଏ ଯୁଗରେ ସଂକୀର୍ଣ୍ଣ ପରିସରରେ ଆବଦ୍ଧ ନ ରହି ଆଦର୍ଶମୂଳକ ଚିନ୍ତା ଦେବାକୁ ସମର୍ଥ ହେଲା । ପୁଣି ଏହା ଫଳରେ ଆଧୁନିକ ସାହିତ୍ୟ ସାଧାରଣ ଜନ ଜୀବନର ସଂସ୍ପର୍ଶରେ ଆସିବାକୁ ସୁଯୋଗ ପାଇଲା ।

### ( ୨ ) ବିଷୟବସ୍ତୁର ସମାବେଶ—

ବୈଷ୍ଣବ ଓ ଭଞ୍ଜଯୁଗରେ ବିଷୟବସ୍ତୁର ଗୋଟିଏ ନିର୍ଦ୍ଦିଷ୍ଟ ପରିସର ମଧ୍ୟରେ ଘଟଣାବଳୀର ଚୟନ କରାଯାଉଥିଲା ।

ନାୟକ ନାୟିକାଙ୍କର ବାଲ୍ୟ, ଯୌବନ ପୌଗଣ୍ଡ ଲୀଳାର ବର୍ଣ୍ଣନା, ପ୍ରେମ, ବିରହ, ମିଳନର ବର୍ଣ୍ଣନାରେ ସବୁବେଳେ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ରହିଥିଲା । ମାତ୍ର ଆଧୁନିକ ଯୁଗରେ ବିଷୟବସ୍ତୁର ସମାବେଶରେ ସେ ନିର୍ଦ୍ଦିଷ୍ଟ ସୀମାର ସଙ୍କୀର୍ଣ୍ଣତା ଦୂର ହୋଇଅଛି । କାବ୍ୟର ବିଷୟବସ୍ତୁ ସମାବେଶରେ ଦରିଦ୍ରଠାରୁ ଧନୀ ପର୍ଯ୍ୟନ୍ତ, ପାପୀଠାରୁ ପୁଣ୍ୟବାନ ବ୍ୟକ୍ତି ପର୍ଯ୍ୟନ୍ତ, ସାମାଜିକ ରାଜନୈତିକ, ଧାର୍ମିକ, ଶିକ୍ଷାମୂଳକ ବାଣୀ ପ୍ରଚାରଠାରୁ ଦୈନନ୍ଦିନ ଜୀବନର ଚିତ୍ର ପର୍ଯ୍ୟନ୍ତ ବହୁମୁଖୀ ପରିସର ମଧ୍ୟରେ ବିଷୟବସ୍ତୁର ବହୁ ରୂପତା ପ୍ରକାଶ ପାଇଥିଲା । କଳ୍ପନା ଚାତୁରୀ, ଭାବସମାବେଶ, ମନୋବୈଜ୍ଞାନିକ ବିଶ୍ଲେଷଣ, ମାନବିକତାର ଆଦର୍ଶ ସ୍ଥାପନ ପ୍ରଭୃତି ନୂତନ ନୂତନ ବୈଶିଷ୍ଟ୍ୟରେ ଆଧୁନିକ ସାହିତ୍ୟ ଆତ୍ମପ୍ରକାଶ କଲା । ରାଧାନାଥଙ୍କର ଉଷା, ଗଙ୍ଗାଧରଙ୍କର ପ୍ରଣୟ-ବଲ୍ଲରୀ, ମଧୁସୂଦନଙ୍କର ସୀତା ବନବାସ ଏହାର ପ୍ରକୃଷ୍ଟ ଉଦାହରଣ । ଏସବୁ କାବ୍ୟମାନଙ୍କୁ ବୈଷ୍ଣବ ଯୁଗର ବା ଭଞ୍ଜ ଯୁଗର କାବ୍ୟମାନଙ୍କ ସହିତ ତୁଳନାତ୍ମକ ଭାବରେ ବିଚାର କଲେ ଏସବୁ କାବ୍ୟମାନଙ୍କର ପ୍ରାଧାନ୍ୟ ସହଜରେ ଜଣାପଡ଼ିବ ।

(୩) କାବ୍ୟରେ ଜୀବନ ଚିତ୍ର--

ରାଧାନାଥ ଯୁଗ ପୂର୍ବରୁ ଓଡ଼ିଆ ସାହିତ୍ୟରେ କାବ୍ୟ କବିତାରେ ରାଧାକୃଷ୍ଣ, ରାମ ସୀତା ବା ରାଜାରାଣୀଙ୍କର ଜୀବନର ଚିତ୍ର ପ୍ରାୟତଃ ଦେଖିବାକୁ ମିଳେ । ଏହି ଜୀବନଚିତ୍ରର ବର୍ଣ୍ଣନା-ଗୁଡ଼ିକ ସବୁସ୍ଥଳରେ ଏକପ୍ରକାର ହୋଇଥିବାରୁ ବିଭିନ୍ନ କାବ୍ୟରେ କୌଣସି ନୂତନତ୍ୱ କରିଲକ୍ଷିତ ହୁଏ ନାହିଁ । ଏମାନଙ୍କର ଜୀବନ ଚିତ୍ର ଗୋଟିଏ ସଙ୍କୀର୍ଣ୍ଣ ଏବଂ ନିର୍ଦ୍ଦିଷ୍ଟ ନିୟମରେ ଚିତ୍ରିତ । ମାତ୍ର

ରାଧାନାଥ ଯୁଗରେ କାବ୍ୟ କବିତାରେ ଯେଉଁ ଜୀବନର ଚିତ୍ର ଦେଖାଗଲା ତାହା ଏକାବେଳକେ ଭିନ୍ନ ଧରଣର । ଜୀବନର ଚିତ୍ର ଏଠାରେ ସଂକୀର୍ଣ୍ଣ ନ ହୋଇ ବ୍ୟାପକ ହେଲା । ସାଧାରଣ ଜନଜୀବନରେ ଯାହା ପ୍ରାକୃତିକ ବା ସମ୍ଭବ ତାହା ହିଁ କାବ୍ୟର ବର୍ଣ୍ଣନା ଭିତରେ ସ୍ଥାନ ପାଇଲା । ସାଧାରଣ ଜୀବନରୁ କଥାବସ୍ତୁ ଗ୍ରହଣ କରି ତାହାକୁ ଏକ ଆଦର୍ଶମୂଳକ ପରିପ୍ରେକ୍ଷୀରେ ଚିତ୍ରଣ କରିବା ହିଁ ଏଯୁଗର ଏକ ପ୍ରଧାନ ବିଶେଷତ୍ୱ । ରାଧାନାଥ, ଗଙ୍ଗାଧର ଓ ମଧୁସୂଦନଙ୍କର ପ୍ରତ୍ୟେକ କାବ୍ୟରେ ଏହା ପ୍ରମାଣିତ ହୋଇଅଛି । ରାଧାନାଥଙ୍କ କାବ୍ୟମାନଙ୍କର କଥାବସ୍ତୁ ରାଜାରାଣୀଙ୍କ ଜୀବନରୁ ଆଶ୍ରୟକରି ଗଢ଼ିଉଠିଥିଲେ ହେଁ ସେଥିରେ ମାନବିକତାର ଯେଉଁ ବ୍ୟାପକ ଚିତ୍ର ମିଳେ ତାହା ତାଙ୍କର ବୈଶିଷ୍ଟ୍ୟ ।

(୪) ପ୍ରକୃତିର ଆତ୍ମପ୍ରକାଶ—

ରାଧାନାଥଙ୍କ ପୂର୍ବରୁ ଓଡ଼ିଆ କାବ୍ୟ କବିତାମାନଙ୍କର ପ୍ରକୃତି ଚିତ୍ରଣ ସ୍ଥାନ ପାଇଥିଲେ ହେଁ ସେସବୁ ପ୍ରସଙ୍ଗୋଚିତ ଭାବରେ ବର୍ଣ୍ଣିତ । ବୈଷ୍ଣବ ବା ଭଞ୍ଜଯୁଗରେ କାବ୍ୟମାନଙ୍କରେ ପ୍ରକୃତିର ବାହ୍ୟଚିତ୍ରଣ କେବଳ ଦେଖାଯାଏ । ପ୍ରସଙ୍ଗ କ୍ରମରେ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ଚନ୍ଦ୍ରୋଦୟ, ବିଭିନ୍ନ ଋତୁଚକ୍ରର ଚିତ୍ର ପ୍ରଭୃତି ଏସବୁରେ ଦେଖାଯାଏ । ରାଧାନାଥ ଯୁଗରେ ଏସବୁର ବର୍ଣ୍ଣନା ଅଛି ସତ ମାତ୍ର ଏ ଯୁଗରେ ବହିଃପ୍ରକୃତି ଅପେକ୍ଷା ଅନ୍ତଃପ୍ରକୃତିର ଚିତ୍ରଣ ବିଶେଷ ପ୍ରଣିଧାନର ଯୋଗ୍ୟ । ପ୍ରକୃତି ଏ ଯୁଗରେ ମଣିଷ ଜୀବନରେ ସୁଖ ଦୁଃଖରେ ସମଭାଗୀ ହେବା ସଙ୍ଗେ ସଙ୍ଗେ ସ୍ୱତନ୍ତ୍ର ଭାବରେ ମାନବିକ ଗୁଣରେ ଭୂଷିତ ହୋଇ ଆତ୍ମପ୍ରକାଶ କରିଅଛି । ଗଙ୍ଗାଧରଙ୍କର ବିଭିନ୍ନ କାବ୍ୟରେ ପ୍ରକୃତି ଚିତ୍ରଣ ପୁରାତନ ପଦ୍ଧତିର

ଅନୁସରଣ କରିଥିଲେ ହେଁ ତାଙ୍କ ପ୍ରକୃତିର ସ୍ୱାତନ୍ତ୍ର୍ୟ ଅଛି । ରାଧାନାଥଙ୍କର ପ୍ରକୃତି ଚିତ୍ରଣରେ ଯେଉଁ ସାରଦର୍ଶିତା ପରିଲକ୍ଷିତ ହୁଏ, ତାହା ଆଧୁନିକ ଯୁଗର ଏକ ବିଶିଷ୍ଟ ଅବଦାନ । ଚିଲିକା ପରି ପ୍ରାକୃତିକ ସଂପଦକୁ ମୂର୍ତ୍ତିମନ୍ତ କରି ରାଧାନାଥ ଯେଉଁ ବର୍ଣ୍ଣନା କରିଛନ୍ତି, ତହିଁରେ ତାଙ୍କର ଏକ ସ୍ୱତନ୍ତ୍ର ଚିନ୍ତାଧାରାର ପ୍ରକାଶ ଘଟିଅଛି । ଐତିହାସିକ ବା ଭୌଗୋଳିକ ସ୍ଥାନ ବିଶେଷ ରାଧାନାଥଙ୍କ ଲେଖନୀରେ ରୂପାୟିତ ହୋଇପାରିଛନ୍ତି ଜୀବନ୍ତ ଭାବରେ ।

(୫) ଛନ୍ଦ ପ୍ରୟୋଗ—

ବୈଷ୍ଣବଯୁଗରେ ଧାର୍ମିକ ମତବାଦର ପରିପ୍ରଚାର ସାହିତ୍ୟର ପ୍ରଧାନ ଲକ୍ଷ୍ୟ ଥିଲା । ତେଣୁ ସେ ଯୁଗରେ ସାହିତ୍ୟିକ ବିଭବ ପ୍ରତି ବିଶେଷ ଦୃଷ୍ଟି ଦିଆଯାଇ ନାହିଁ । ବୈଷ୍ଣବ ଯୁଗରେ ଛନ୍ଦର ପ୍ରଚଳନ ସୀମିତ ଥିଲା । ମାତ୍ର ଭଞ୍ଜଯୁଗରେ ଯେତେବେଳେ ସାହିତ୍ୟ ଧର୍ମର ପରିସରରୁ ମୁକ୍ତ ଲାଭ କରି ସାହିତ୍ୟିକ ବିଭବ ବୃଦ୍ଧିରେ ଅଗ୍ରସର ହେଲା, ସେତେବେଳେ ବିଭିନ୍ନ ଛନ୍ଦର ପ୍ରୟୋଗ ବଢ଼ିଲା ଓ ସାହିତ୍ୟର ସାଙ୍ଗୀତିକ ମୂଲ୍ୟ ଯଥେଷ୍ଟ ଭାବରେ ରକ୍ଷା କରାଗଲା । କାବ୍ୟ କବିତା ଗାନଯୋଗ୍ୟ ନ ହେଲେ ଉପଯୁକ୍ତ ସାହିତ୍ୟର ଗୌରବରୁ ବଞ୍ଚିତ ହେଉଥିଲା । ମାତ୍ର ରାଧାନାଥ ଯୁଗରେ ଏହାର ବ୍ୟତିକ୍ରମ ଦେଖାଦେଲା । ସାହିତ୍ୟର ସାଙ୍ଗୀତିକ ମୂଲ୍ୟ ହ୍ରାସ ପାଇଲା । ଫଳରେ ଛନ୍ଦନିୟମ ଅନୁସରଣ କରିବାର କଠୋର ନୀତି ଦୂରେଇ ଗଲା । ପୂର୍ବରୁ କାବ୍ୟଗୁଡ଼ିକ ବିଭିନ୍ନ ସର୍ଗରେ ବିଭକ୍ତ ହେଉଥିଲା ଏବଂ ସେଥିପାଇଁ ବିଭିନ୍ନ ଛନ୍ଦର ପ୍ରୟୋଗ ଅପରିହାର୍ଯ୍ୟ ଥିଲା । ମାତ୍ର ରାଧାନାଥଙ୍କ ଯୁଗରେ ଖଣ୍ଡକାବ୍ୟର ପ୍ରଚଳନ ହେବାରୁ ଏ ନିୟମ ଅନେକାଂଶରେ ଲଘିବ

ହେଲା । କୌଣସି ଗୋଟିଏ କାବ୍ୟରେ ରାଧାନାଥ ଏକାଧିକ ଛନ୍ଦର ପ୍ରୟୋଗ କରିବାକୁ ଉଚିତ ମନେ କରି ନାହାନ୍ତି । ମଧୁସୂଦନଙ୍କର ଛନ୍ଦ ପ୍ରୟୋଗରେ ବୈଚିତ୍ର୍ୟ ପରିଲକ୍ଷିତ ହୁଏ । ଗଙ୍ଗାଧର ଛନ୍ଦ ପ୍ରୟୋଗ କରି ନିଜର ବୈଶିଷ୍ଟ୍ୟ ବଜାୟ ରଖିଅଛନ୍ତି । ରାଧାନାଥ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କରି ସେଥିରେ କୃତକାର୍ଯ୍ୟ ହେଲେ । ତେଣୁ ଚିନ୍ତାମଣି ରାଧାନାଥଙ୍କର ପଦାଙ୍କ ଅନୁସରଣ କଲେ । ଗଙ୍ଗାଧରଙ୍କ ଉପରେ ପ୍ରାଚୀନ ସାହିତ୍ୟର ପ୍ରଭାବ ଥିବାରୁ ସେ ସଂସ୍କୃତ ଛନ୍ଦ ନିୟମ ଅନୁସରଣ କରିଅଛନ୍ତି ।

(୬) ମିତ୍ରାକ୍ଷର ପ୍ରୟୋଗ—

ରାଧାନାଥ ଯୁଗରେ ଯେତେବେଳେ ସଙ୍ଗୀତ ସାହିତ୍ୟରୁ ବିଚ୍ଛିନ୍ନ ହୋଇ ତାର ସ୍ୱତନ୍ତ୍ର ପଥ ବାଛି ନେଲା, ସେତେବେଳେ ସାହିତ୍ୟକୁ ପାଠକମାନଙ୍କ ନିକଟରେ ଆକର୍ଷଣୀୟ କରିବାକୁ ଯାଇ ରାଧାନାଥ ମିତ୍ରାକ୍ଷର ପ୍ରୟୋଗ ଓ ଉପଧାରକ୍ଷଣ ନିମିତ୍ତ ଯତ୍ନବାନ ହେଲେ । ରାଧାନାଥ, ମଧୁସୂଦନ ଓ ଗଙ୍ଗାଧର ମିତ୍ରାକ୍ଷର ପ୍ରୟୋଗରେ ସେମାନଙ୍କର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଅଛନ୍ତି । କବିତାକୁ ଆବୃତ୍ତି ଯୋଗ୍ୟ କରିବା ନିମିତ୍ତ ମିତ୍ରାକ୍ଷର ପ୍ରଚଳନ ସେ ସମୟରେ ଏକ ଆବଶ୍ୟକୀୟ ବିଭବ ଥିଲା ।

(୭) ରଚନା ଶୈଳୀ—

ରଚନା ଶୈଳୀ ବିଷୟ ବିଚାର କରିବାକୁ ଗଲେ ପ୍ରଥମରେ ଭାଷା ଓ ଛନ୍ଦ ପ୍ରୟୋଗକୁ ଲକ୍ଷ୍ୟ କରିବାର କଥା । ରାଧାନାଥ ପୂର୍ବ ଯୁଗର କାବ୍ୟକବିତାରେ ଅଳଙ୍କାର ପ୍ରୟୋଗର ବାହୁଲ୍ୟ ଯୋଗୁଁ ଭାଷା ପ୍ରୟୋଗରେ କବିମାନେ ପାଣ୍ଡିତ୍ୟ ଦେଖାଉଥିଲେ ।

ମାତ୍ର ରାଧାନାଥ ଯୁଗରେ କାବ୍ୟ କବିତାର ଭାଷାରେ ସେ ପ୍ରକାର ପାଣ୍ଡିତ୍ୟ ଦେଖାଗଲା ନାହିଁ । ସାହିତ୍ୟର ପରିସର ବ୍ୟାପକ ହେବାରୁ ସର୍ବଜନବୋଧ ସ୍ୱାଭାବିକ ଭାଷା କାବ୍ୟ-କବିତାରେ ସ୍ଥାନ ପାଇଲା । ମାତ୍ର ଏଠାରେ ରାଧାନାଥଙ୍କ କଥା ସ୍ୱତନ୍ତ୍ର । ଭାଷା ଦୃଷ୍ଟିରୁ ଦେଖିଲେ ରାଧାନାଥଙ୍କ ରଚନାର ଶ୍ରେଷ୍ଠତ୍ୱ ସ୍ୱୀକାର୍ଯ୍ୟ । ଶବ୍ଦ ସଂଯୋଜନା ହିଁ ତାଙ୍କର ଏକାନ୍ତ ମୌଳିକତା । ସେ ତାଙ୍କର କାବ୍ୟ କବିତାରେ ସଂସ୍କୃତ ଶବ୍ଦ ବ୍ୟବହାର କରିଥିଲେ ହେଁ ଶବ୍ଦଗୁଡ଼ିକର ପ୍ରୟୋଗ ଏପରି ଯଥାର୍ଥ ଯେ ସେପରି ପ୍ରୟୋଗ ଏପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର କୌଣସି କବି ପକ୍ଷରେ ସମ୍ଭବପର ହୋଇ ପାରିନାହିଁ । ରାଧାନାଥଙ୍କର ଚନ୍ଦ୍ରଭାଗା କାବ୍ୟ ପାଠକଲେ ଭାଷାର ଲାଳିତ୍ୟରେ ପାଠକ ଅଭିଭୂତ ହୋଇପଡ଼େ । ରାଧାନାଥଙ୍କର ମହାଯାତ୍ରା କାବ୍ୟର ଭାଷା ପ୍ରୟୋଗ କେବଳ ରାଧାନାଥଙ୍କ ପକ୍ଷରେ ସମ୍ଭବ । ମଧୁସୂଦନଙ୍କର ଭାବ ଦାର୍ଶନିକତାରେ ପରିପୂର୍ଣ୍ଣ ଥିବାରୁ ତାଙ୍କର ଭାଷା ଅନେକ ସମୟରେ କ୍ଲିଷ୍ଟବୋଧ ହୋଇଥାଏ । ଗଙ୍ଗାଧରଙ୍କ ଭାଷାରେ ଭାବସାମ୍ୟ ଅନେକତ୍ର ରକ୍ଷିତ ହୋଇପାରି ନାହିଁ ସତ, ମାତ୍ର ତାଙ୍କ ଭାଷାକ୍ଲିଷ୍ଟତା ଦୋଷଦୁଷ୍ଟ ନୁହେଁ ।

( ୮ ) କାବ୍ୟ କବିତାର ପରିମାପ—

ଏ ଯୁଗରେ କାବ୍ୟ-ସାହିତ୍ୟର ପରମ୍ପରାକୁ କ୍ଷୁଣ୍ଣକରି ଖଣ୍ଡକାବ୍ୟର ପ୍ରଚଳନ ବିଶେଷ ଭାବରେ ଦେଖାଦେଇଅଛି । ମହାକାବ୍ୟର ପରମ୍ପରା ଏ ଯୁଗରେ ଭାଙ୍ଗି ଯାଇଛି କହିଲେ ଚଳେ । ରାଧାନାଥଙ୍କର ମହାଯାତ୍ରା ଯଦିଓ ଏ ଦୃଷ୍ଟିରୁ ଏକ ବ୍ୟତିକ୍ରମ, ତଥାପି ମହାଯାତ୍ରା ମହାକାବ୍ୟ ସୌଧ ନିର୍ମାଣ

କୌଶଳରେ ଯେଉଁ ଆଧୁନିକତା ପରିଲକ୍ଷିତ ହୁଏ, ତାହା ପ୍ରାଚୀନ ପରମ୍ପରାକୁ ଦୂର କରି ଦେଇଅଛି । ଏ ଯୁଗରେ ଶ୍ରେଷ୍ଠ ବଡ଼ ଅନେକ କବି କାବ୍ୟ କବିତା ଲେଖିଅଛନ୍ତି, ମାତ୍ର ଏହି କାବ୍ୟ-କବିତାଗୁଡ଼ିକର ଆକାର ପ୍ରକାରରେ ଯେଉଁ ପରିବର୍ତ୍ତନ ଦେଖାଦେଇଅଛି ତାହା ହିଁ ଆଧୁନିକତାର ସଙ୍କେତ ବହନ କରିଅଛି ।

( ୯ ) ବ୍ୟଙ୍ଗ କବିତା ସୃଷ୍ଟି—

ଓଡ଼ିଆ ସାହିତ୍ୟରେ ବ୍ୟଙ୍ଗ କବିତାର ସୃଷ୍ଟି କେବଳ ଯେ ଏହି ଯୁଗରେ ନୂତନ କରି ଦେଖା ଦେଇଅଛି, ତାହା ନୁହେଁ । ମାତ୍ର ବ୍ୟଙ୍ଗ କବିତାର ପ୍ରଚଳନ ଏ ଯୁଗରେ ବ୍ୟାପକ ହୋଇଅଛି । ରାଧାନାଥଙ୍କ 'ଦରବାର' ରାଧାନାଥଙ୍କ ନିଜ ଜୀବନର ଏକ ପ୍ରତିଲିପି ରୂପେ ପ୍ରମାଣିତ ହେଲେହେଁ ଏଥିରେ ସମସାମୟିକ ଚିନ୍ତାଧାରା ପ୍ରତି ଯେଉଁ ବ୍ୟଙ୍ଗୋକ୍ତି ପ୍ରକାଶ ପାଇଅଛି, ତାହା ଏ ଯୁଗରେ ଏକ ସ୍ୱାତନ୍ତ୍ର୍ୟ । ଫକୀର ମୋହନଙ୍କ "ମୁଁ ହାଣ୍ଟବାହୁଡ଼ା" ଓ ମଧୁସୂଦନଙ୍କ "ଭଣ୍ଡାର ରସାୟନ" ଏ ପ୍ରକାର କବିତାର ପ୍ରକୃଷ୍ଟ ଉଦାହରଣ ।

(୧୦) ଅନୁବାଦ—

ଓଡ଼ିଆ ସାହିତ୍ୟରେ ଅନୁବାଦର ଧାରା ବହୁ ପୂର୍ବରୁ ପ୍ରଚଳିତ ଥିଲେ ହେଁ ଏ ଯୁଗର ଅନୁବାଦ ସାହିତ୍ୟରେ ନୂତନତ୍ୱ ପରିଲକ୍ଷିତ ହୁଏ । ରାଧାନାଥଙ୍କ "ମେଘଦୂତ" ଏ ଯୁଗର ଏକ ଅମୂଲ୍ୟ ଅନୁବାଦ ସାହିତ୍ୟ । ମଧୁସୂଦନଙ୍କର "ନିର୍ଜ୍ଜନ ଦ୍ୱୀପରେ ନିର୍ବାସିତର ବିଳାପ" ଏ ଯୁଗର ଏକ ଅନୁପମ ଅନୁବାଦ

ସାହିତ୍ୟ । ପୂର୍ବରୁ ଆମର ଅନୁବାଦ ସାହିତ୍ୟ କେବଳ ସଂସ୍କୃତ ସାହିତ୍ୟରେ ଆବଦ୍ଧ ଥିଲା, ମାତ୍ର ଏ ଯୁଗରେ ତାହା ବ୍ୟାପକ ହୋଇ ପାଶ୍ଚାତ୍ୟ ସାହିତ୍ୟର ପରିସରରେ ପ୍ରବେଶ କରିଅଛି ।

(୧୧) ଗଦ୍ୟ ସାହିତ୍ୟର ପ୍ରାଧାନ୍ୟ —

ଓଡ଼ିଆ ସାହିତ୍ୟରେ ଗଦ୍ୟ ସାହିତ୍ୟର ପ୍ରାଧାନ୍ୟ ମୁଖ୍ୟତଃ ଏହି ଯୁଗରେ ବିକଶିତ ରୂପଲାଭ କରିଅଛି । ରାଧାନାଥଙ୍କ ପୂର୍ବରୁ ସାହିତ୍ୟ ଅଙ୍ଗାଙ୍ଗୀଭାବରେ ସଙ୍ଗୀତ ସହିତ ଜଡ଼ିତ ଥିବାରୁ ଗଦ୍ୟର ପ୍ରାଧାନ୍ୟ ବିଶେଷ ଭାବରେ ଅନୁଭୂତ ହୋଇ ନ ଥିଲା । ଏ ଯୁଗରେ ପଡ଼ୋଶୀ ତଥା ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଫଳରେ ଆମ ସାହିତ୍ୟରେ ଗଦ୍ୟର ପ୍ରାଧାନ୍ୟ ସୂଚିତ ହେଲା । ରାଧାନାଥଙ୍କର ଗଦ୍ୟ ସାହିତ୍ୟରେ ବିଶେଷ ଖ୍ୟାତି ନାହିଁ, ମାତ୍ର ଫକୀରମୋହନ ଏ ଯୁଗରେ ଗଦ୍ୟ ସାହିତ୍ୟକୁ ପ୍ରତିଷ୍ଠିତ କରାଇ ଅଛନ୍ତି । ଫକୀର ମୋହନଙ୍କ ପୂର୍ବରୁ ଓଡ଼ିଆ ଉପନ୍ୟାସ ସୃଷ୍ଟି ହୋଇଥିଲେହେଁ ଫକୀର ମୋହନଙ୍କ ହାତରେ ଓଡ଼ିଆ ଉପନ୍ୟାସର ବିଳକ୍ଷଣ ବିକାଶ ସମ୍ଭବ ହୋଇ ପାରିଅଛି । ନାଟକର ବିକାଶ ପ୍ରତି ଦୃଷ୍ଟି ଦେଲେ ରାମଶଙ୍କରଙ୍କର ଉଦ୍ୟମ ଯୋଗୁଁ ଏହି ସମୟ ମଧ୍ୟରେ ଓଡ଼ିଆ ନାଟକ ପ୍ରତିଷ୍ଠିତ ହୋଇ ପାରିଅଛି ।

( ୧୨ ) ପତ୍ର ପତ୍ରିକା—

ଏ ଯୁଗର ସାହିତ୍ୟର ବ୍ୟାପକ ପ୍ରସାର ମୂଳରେ ପତ୍ରପତ୍ରିକାର ଅଭ୍ୟୁଦୟ ଏକ ବିଶିଷ୍ଟ କାରଣ ଅଟେ । ରାଧାନାଥଙ୍କଠାରୁ ଆରମ୍ଭ କରି ଅଧୁନାତନ ଯେ କୌଣସି କବି ବା ଲେଖକ ପତ୍ର ପତ୍ରିକାର ମାଧ୍ୟମରେ ସାହିତ୍ୟ ସେବା ଆରମ୍ଭ

କରି ଅଛନ୍ତି । ପତ୍ର ପତ୍ରିକା ସୃଷ୍ଟି ଫଳରେ କବି ବା ଲେଖକ-ମାନଙ୍କର ଲେଖାର ଯଥାଯଥ ଆଲୋଚନା ସମ୍ଭବ ହୋଇ ପାରିଅଛି । ରାଧାନାଥ ମଧୁସୂଦନ, ଗଙ୍ଗାଧର, ଫକୀର ମୋହନ, ଚନ୍ଦ୍ରାମଣି ପ୍ରମୁଖ କବି ବା ଲେଖକଗଣ ପତ୍ର ପତ୍ରିକାରେ ଆତ୍ମପ୍ରକାଶ କରିଅଛନ୍ତି ଓ ପତ୍ର ପତ୍ରିକାର ସହାୟତାରେ ପ୍ରତିଷ୍ଠିତ ହୋଇ ଅଛନ୍ତି ।

## (୪) ରାଧାନାଥ-ସାହିତ୍ୟର ସ୍ୱରୂପ—

କବିବର ରାଧାନାଥ ପ୍ରଥମେ ବଙ୍ଗଳାରେ କବିତା ଲେଖା ଆରମ୍ଭ କରିଥିଲେ । ମାତ୍ର ଭୂଦେବ ମୁଖୋପାଧ୍ୟାୟଙ୍କ ପ୍ରରୋଚନାରେ ସେ ଓଡ଼ିଆରେ କାବ୍ୟ କବିତା ଲେଖିବାର ପ୍ରୟାସ କଲେ । କବିବର ରାଧାନାଥ ତାଙ୍କର କାବ୍ୟ କବିତା ସୃଷ୍ଟି ମଧ୍ୟରେ ଅନ୍ୟାନ୍ୟ ସାଧାରଣ ପାଣ୍ଡିତ୍ୟ ପ୍ରଦର୍ଶନ କରିଅଛନ୍ତି । ୧୮୬୮ ସାଲଠାରୁ ଆରମ୍ଭ କରି ୧୮୮୫ ସାଲ ପର୍ଯ୍ୟନ୍ତ ସେ ଯେଉଁ ପାଠ୍ୟପୁସ୍ତକଗୁଡ଼ିକ ଲେଖିଥିଲେ, ତହିଁରେ ତାଙ୍କର କବିତ୍ୱର ପରାକାଷ୍ଠା ପ୍ରଦର୍ଶିତ ନ ହେଲେ ହେଁ ମେଘଦୂତ ଭଳି ଅନୁବାଦ ସାହିତ୍ୟରେ ତାଙ୍କର ମୌଳିକତା ପ୍ରଦର୍ଶିତ ହୋଇଅଛି । ଏହି ସମୟ ମଧ୍ୟରେ ସତେ ଯେପରି କବିବର ରାଧାନାଥ ନିଜକୁ ଭବିଷ୍ୟତ ପାଇଁ ପ୍ରସ୍ତୁତ କରିବାରେ ଲାଗିପଡ଼ିଥିଲେ । କାରଣ ଏହି ସମୟରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବ ତାଙ୍କୁ ଏକ ନୂତନ ଦିଗ୍‌ଦର୍ଶନର ସନ୍ଧାନ ଦେବାପାଇଁ ଆହ୍ୱାନ ଜଣାଇଥିଲା । ତେଣୁ ଏହାର ପରବର୍ତ୍ତୀ କାଳରେ କବିବର ରାଧାନାଥ କେଦାରଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା, ପାର୍ବତୀ, ଚିଲିକା, ମହାଯାତ୍ରା, ଯଯାତି

କେଦାରଗୌରୀ, ତୁଳସୀ ସ୍ତବକ, ଉର୍ବଶୀ ଓ ଦରବାର ପ୍ରଭୃତି ଅମୂଲ୍ୟ କାବ୍ୟଗୁଡ଼ିକ ଏ ଜାତିକୁ ଦାନ କରିବାପାଇଁ ସେ ସମର୍ଥ ହୋଇଥିଲେ । ଏହି କାବ୍ୟଗୁଡ଼ିକର ସୃଷ୍ଟି କୌଶଳ ରାଧାନାଥଙ୍କ ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିଭାର ପରିଚୟ ପ୍ରଦାନ କରିଅଛି । ଏହି କାବ୍ୟ-ଗୁଡ଼ିକର କଥାବସ୍ତୁରେ ରାଧାନାଥ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ଯେଉଁ ଅପୂର୍ବ ସମନ୍ୱୟ ସମ୍ପାଦନ କରିଛନ୍ତି, ତାହା ତାଙ୍କର ଅପୂର୍ବ କଳାସୃଷ୍ଟିର ପରିଚୟସୂଚକ । ମାତ୍ର ଏହି ସମନ୍ୱୟ ସ୍ଥାପନ କୌଶଳ ସେତେବେଳେ ଉତ୍କଳର ବୁଦ୍ଧିଜୀବୀ ଶ୍ରେଣୀରେ ଆଦୃତ ହେବାପାଇଁ କଷ୍ଟକର ହୋଇଥିଲା । କାରଣ ସେତେବେଳର ଶିକ୍ଷିତ ପାଠକ-ମାନେ ମଧ୍ୟ ଏ କାବ୍ୟମାନଙ୍କର କଥାବସ୍ତୁର ଆହରଣ କୌଶଳକୁ ଧରିପାରି ନ ଥିଲେ । ବିଦେଶୀ କଥାବସ୍ତୁର ନାୟକ ନାୟିକା ଯେତେବେଳେ ଏ ଦେଶର ନାମକରଣ ସହିତ କାବ୍ୟମାନଙ୍କରେ ଆତ୍ମପ୍ରକାଶ କଲେ, ସେତେବେଳେ ଏ ଦେଶର ପାଠକମାନେ ସେମାନଙ୍କୁ ଏ ଦେଶର ଐତିହାସିକ ଚରିତ୍ର ରୂପେ ଗ୍ରହଣ କରିନେଲେ । ତେଣୁ ପାର୍ବତୀ ଭଳି କାବ୍ୟର କଥାବସ୍ତୁ ଏ ଦେଶର ପାଠକ ଚିତ୍ତକୁ ଆଲୋଡ଼ିତ କରିପକାଇଛି । କେବଳ ପାର୍ବତୀ ନୁହେଁ ଉଣା ଅଧିକେ ପ୍ରାୟ ସମସ୍ତ କାବ୍ୟର କଥାବସ୍ତୁରେ ସେ ସମୟର ପାଠକଶ୍ରେଣୀ ଆପତ୍ତି ଉଠାଇଥିଲେ । କବିବର ରାଧାନାଥ ମଧ୍ୟ ତାଙ୍କ କାବ୍ୟଗୁଡ଼ିକର କଥାବସ୍ତୁ ବିଷୟରେ ସେତେବେଳେ କୌଣସି ସୂଚନା ପ୍ରଦାନ କରି ନ ଥିଲେ । ସେଥିପାଇଁ ରାଧାନାଥଙ୍କୁ କମ ନିନ୍ଦିତ ହେବାକୁ ପଡ଼ିନାହିଁ ।

ରାଧାନାଥଙ୍କର କବିତ୍ୱ ଉନ୍ମେଷର ପ୍ରଥମ କାଳରେ ମେଘଦୂତର ଅନୁବାଦ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା

ପ୍ରଦାନ କରିଥିଲା । କାରଣ ମେଘଦୂତ ଅନୁବାଦରେ ସେ ଏପରି ଭାଷା ବ୍ୟବହାର କରି ଅଛନ୍ତି ଯେ ତାହା ପାଠକଲେ ସତେ ଯେପରି ମୌଳିକ ରଚନା ପରି ଜଣାପଡ଼େ ।

୧୮୮୬ ସାଲରେ ଲିଖିତ କେଦାରଗୌରୀ କାବ୍ୟର କଥାବସ୍ତୁକୁ ରାଧାନାଥ ଗ୍ରୀସ୍ ଦେଶର ଓଭିଡ୍‌ଙ୍କ ମେଟାମର୍-ଫସିସ୍‌ରେ ଥିବା ପିରାମସ୍ ଓ ଥିସ୍‌ବୀ ଗଳ୍ପରୁ ଗ୍ରହଣ କରିଅଛନ୍ତି । ସେ ଗଳ୍ପଟିକୁ ଭୁବନେଶ୍ୱରଠାରେ ଏପରି ଭାବରେ ଆକ୍ଷେପ କରିଛନ୍ତି ଯେ ପାଠକ ଏହି କାବ୍ୟକୁ ପାଠକରି ଏହାକୁ ସତେ ଯେପରି ଭୁବନେଶ୍ୱରର ଘଟଣା ବୋଲି ମନେକରେ । ଏହି କାବ୍ୟର କଥାବସ୍ତୁରେ ରାଧାନାଥ କୌଣସି ନିଜସ୍ୱ ଭାବନାକୁ ସ୍ଥାନ ଦେଇ ନାହାନ୍ତି । ରାଧାନାଥଙ୍କର କେଦାରଗୌରୀ କାବ୍ୟ ଓଡ଼ିଶାର ଲୋକମାନଙ୍କ ଉପରେ ଏପରି ପ୍ରଭାବ ପକାଇ ଅଛି ଯେ ଭୁବନେଶ୍ୱରର କେଦାରଗୌରୀକୁ ସେମାନେ ରାଧାନାଥଙ୍କର ଗଳ୍ପ ଅନୁସାରେ ଗ୍ରହଣ କରିଛନ୍ତି । ରାଧାନାଥଙ୍କର ଲେଖନୀ ଏକ ପ୍ରତିଷ୍ଠିତ ପରମ୍ପରାକୁ ଛିନ୍ନକରି ଏକ ନୂତନ ପରମ୍ପରା ସୃଷ୍ଟି କରିବା କମ୍ କଥା ନୁହେଁ । ଏହା କେବଳ ରାଧାନାଥଙ୍କ ପରି ଅସାଧାରଣ ପ୍ରତିଭାଶାଳୀ କବିଙ୍କ ପକ୍ଷରେ ସମ୍ଭବ ।

୧୮୮୬ସାଲରେ ଲିଖିତ 'ଚନ୍ଦ୍ରଭାଗା' ଓଭିଡ୍‌ଙ୍କର ଆପୋଲୋ ଓ ଡାଫ୍‌ନୀ ଗଳ୍ପକୁ ଆଶ୍ରୟ କରି ଗଢ଼ି ଉଠିଅଛି । ଚନ୍ଦ୍ରଭାଗାର କଥାବସ୍ତୁ ମୂଳତଃ ରାଧାନାଥ ଓଭିଡ୍‌ଙ୍କ ଗଳ୍ପରୁ ଗ୍ରହଣ କରିଥିଲେ ହେଁ ଚନ୍ଦ୍ରଭାଗାରେ ରାଧାନାଥଙ୍କର ବୈଶିଷ୍ଟ୍ୟ ଅନେକ ପରିମାଣରେ ପ୍ରକାଶ ପାଇଅଛି । ରାଧାନାଥ ନିଜର ମୌଳିକ କଳ୍ପନାକୁ ଓଭିଡ୍‌ଙ୍କ କଥାବସ୍ତୁ ସହିତ ମିଶାଇଦେଇ ଚନ୍ଦ୍ରଭାଗାକୁ ଯେପରି ରୂପ ପ୍ରଦାନ

କରିଛନ୍ତି ତାହା ବାସ୍ତବରେ ତାଙ୍କର ରଚନା କୌଶଳର ପରିଚୟ ପ୍ରଦାନ କରେ । ରାଧାନାଥ କେଦାରଗୌରୀ କାବ୍ୟକୁ ଓଭିଡ୍‌ଙ୍କ କଥାବସ୍ତୁ ଅନୁସାରେ ରଚନା କରି ସେ କାବ୍ୟର ଜନପ୍ରିୟତା ଲକ୍ଷ୍ୟ କରିଛନ୍ତି ଏବଂ କେଦାରଗୌରୀ ପରେ ଚନ୍ଦ୍ରଭାଗାରେ ଓଭିଡ୍‌ଙ୍କ ଗଳ୍ପ ସହିତ ନିଜର ପରିକଳ୍ପନାର ମିଶ୍ରଣ କରି କାବ୍ୟର ଶିଳ୍ପ-ସୌନ୍ଦର୍ଯ୍ୟ ବୃଦ୍ଧି କରି ଅଛନ୍ତି । ଚନ୍ଦ୍ରଭାଗାରେ ରାଧାନାଥଙ୍କର ଭାଷା-ବିନ୍ୟାସ ଯେ କୌଣସି ପାଠକକୁ ମୁଗ୍ଧ କରିବାର କଥା । ଚନ୍ଦ୍ରଭାଗାର କଥାବସ୍ତୁ ମଧ୍ୟ କୋଣାର୍କ ଦର୍ଶକମାନଙ୍କ ଉପରେ କମ୍ ପ୍ରଭାବ ବିସ୍ତାର କରିନାହିଁ ।

୧୮୮୭ ସାଲରେ ନନ୍ଦିକେଶ୍ୱରୀ କାବ୍ୟ ରଚିତ । ଏହି କାବ୍ୟର କଥାବସ୍ତୁ ଓଭିଡ୍‌ଙ୍କ "ସିଲ୍" ଗଳ୍ପ ଉପରେ ନିର୍ଭର କରିଅଛି । ମାତ୍ର ରାଧାନାଥ 'ସିଲ୍' ଗଳ୍ପ ସହିତ ଓଡ଼ିଶାର ଇତିହାସ ଓ ବାଇରନ୍‌ଙ୍କର "ସିଜ୍ ଅଫ୍ କୋରିନ୍ଥ"କୁ ଏପରି ଭାବରେ ମିଶାଇ ଦେଇଅଛନ୍ତି ଯେ ସତେ ଯେପରି ସିଲ ଗଳ୍ପର ସତ୍ତା ହଜିଯାଇଅଛି । ନନ୍ଦିକେଶ୍ୱରୀ କାବ୍ୟର କଥାବସ୍ତୁକୁ କବି ଏପରି ସ୍ଥାନରେ ଖଞ୍ଜି ଦେଇଅଛନ୍ତି ଯେ ପୂର୍ବକାବ୍ୟମାନଙ୍କର କଥାବସ୍ତୁ ପରମ୍ପରା ସୃଷ୍ଟି କଲାଭଳି ଏହି କାବ୍ୟର କଥାବସ୍ତୁ ମଧ୍ୟ ପରମ୍ପରା ସୃଷ୍ଟି କରିଅଛି । ନନ୍ଦିକେଶ୍ୱରୀ ପଠା ଏହାର ମୂକସାକ୍ଷୀ ।

୧୮୮୮ ସାଲରେ ରଚିତ ଉଷା କାବ୍ୟର କଥାବସ୍ତୁ ଓଭିଡ୍‌ଙ୍କ "ଆଟଲାଣ୍ଟା ରେସ୍"ର କଥାବସ୍ତୁ ଉପରେ ଆଶ୍ରୟ କରି ଗଢ଼ି ଉଠିଅଛି । ମାତ୍ର ରାଧାନାଥ ଏହାସହିତ ଭାରତୀୟ ପୌରାଣିକ ପରମ୍ପରାରୁ ଅଭିଶପ୍ତା ତିଲୋତ୍ତମା ଉପାଖ୍ୟାନକୁ ମିଶାଇଦେଇ କାବ୍ୟର କଥାବସ୍ତୁର ଅଭିନବତ୍ୱ ପ୍ରଦର୍ଶନ କରି ଅଛନ୍ତି । ପୂର୍ବ

କାବ୍ୟଭଳି ଏହି କାବ୍ୟର କଥାବସ୍ତୁ ମଧ୍ୟ ସ୍ଥାନର ନାମାନୁସାରେ ଖଚିତ ହୋଇଅଛି ।

୧୮୯୦ ସାଲରେ କବିବର ରାଧାନାଥ "ପାର୍ବତୀ" କାବ୍ୟ ରଚନା କରିଥିଲେ । ଏହି କାବ୍ୟର କଥାବସ୍ତୁ ପାଇଁ କବି ଓଭିଡ୍‌ଙ୍କ ଉପରେ ନିର୍ଭର କରିଥିଲେ ସୁଦ୍ଧା ମୁଖ୍ୟଭାବରେ ଅସ୍‌କାଇଲସ୍‌ଙ୍କ ଦ୍ୱାରା ଲିଖିତ 'ଆଗାମେମ୍‌ନନ୍‌' ନାଟକର ଅନୁସରଣ କରିଅଛନ୍ତି । ଉପରୋକ୍ତ କଥାବସ୍ତୁକୁ ଗ୍ରହଣ କରି ରାଧାନାଥ ପୁଣି ମାଦଳାପାଞ୍ଜି ଓ ଓଡ଼ିଶାର ଇତିହାସରୁ ଏହି କାବ୍ୟପାଇଁ କଥାବସ୍ତୁର କଙ୍କାଳ ଗ୍ରହଣ କରି ଅଛନ୍ତି । ପୂର୍ବବର୍ତ୍ତୀ କାବ୍ୟଗୁଡ଼ିକ ଏଦେଶରେ ଗୋଟିଏ ଗୋଟିଏ ପରମ୍ପରା ସୃଷ୍ଟି କରିଥିଲେ ସତ, ମାତ୍ର ପାର୍ବତୀ କାବ୍ୟ ଅସମାପ୍ତ ଅବସ୍ଥାରେ ଏ ଦେଶରେ ଏକ ଅସନ୍ତୋଷର ବାୟୁମଣ୍ଡଳ ସୃଷ୍ଟି କଲା । କବିବର ରାଧାନାଥଙ୍କ ବିରୁଦ୍ଧରେ ଏତିକବେଳେ ଏକ ପ୍ରବଳ ଜନରବ ପ୍ରଚାରିତ ହେଲା । ଏଥିରେ ରାଧାନାଥ କମ୍ ବିବ୍ରତ ହୋଇ ନ ଥିଲେ ।

୧୮୯୧ ସାଲରେ ରାଧାନାଥ "ଚିଲିକା" ରଚନା କଲେ । ଚିଲିକା କାବ୍ୟ ତାଙ୍କର ଏକ ସାର୍ଥକ ସୃଷ୍ଟି । ଏହି କାବ୍ୟର କଥାବସ୍ତୁ ପାଇଁ ତାଙ୍କୁ କୌଣସି ବିଦେଶୀ ସାହିତ୍ୟର ଅନୁସରଣ କରିବା ପାଇଁ ପଡ଼ିନାହିଁ । ପ୍ରକୃତି ଉପରେ ଆଧାରିତ ଚିଲିକା କାବ୍ୟରେ କବି ନିଜର କଳ୍ପନା ବିଳାସର ପରାକାଷ୍ଠା ପ୍ରଦର୍ଶନ କରିଅଛନ୍ତି । ପ୍ରସଙ୍ଗୋଚିତ ଭାବରେ ପୁରୁଷୋତ୍ତମ ଦେବଙ୍କର କାଞ୍ଚି ଅଭିଯାନ ଓ ରକ୍ତବାହୁ—ଆକ୍ରମଣକୁ କବି କାବ୍ୟରେ ସ୍ଥାନ ଦେଇ ଅଛନ୍ତି । ଚିଲିକା କାବ୍ୟ ରଚନା ଦ୍ୱାରା ରାଧାନାଥ ତାଙ୍କର ଜାତୀୟତା ତଥା ଦେଶପ୍ରୀତିର ପରାକାଷ୍ଠା ପ୍ରଦର୍ଶନ କରି ଅଛନ୍ତି ।

ଉତ୍କଳର ଦୁର୍ଦ୍ଦଶାଲାଗି କବି ଏହି କାବ୍ୟରେ ଦୁଃଖ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ଆଶାର ସ୍ୱପ୍ନ ଦେଖିଛନ୍ତି ।

୧୮୯୨ ସାଲରେ କବିବର ରାଧାନାଥ "ମହାଯାତ୍ରା" ମହାକାବ୍ୟ ରଚନାରେ ମନୋନିବେଶ କରିଛନ୍ତି । ମହାଯାତ୍ରା ଅସଂପୂର୍ଣ୍ଣ ହେଲେହେଁ ଓଡ଼ିଆ ସାହିତ୍ୟର ମହାକାବ୍ୟ ରୂପେ ଖ୍ୟାତ । ଏହି ମହାଯାତ୍ରାରେ କବିବର ରାଧାନାଥଙ୍କର ଅପୂର୍ବ ପାଣ୍ଡିତ୍ୟର ପରିଚୟ ମିଳିଅଛି । ମହାଯାତ୍ରାର ପରିକଳ୍ପନାରେ ମହାଭାରତୀୟ ପ୍ରେମର ମନ୍ତ୍ର ନିହିତ । ଭାରତୀୟ ପୁରାଣମାନଙ୍କରୁ ରାଧାନାଥ ବହୁ ବୃତ୍ତାନ୍ତ ଗ୍ରହଣ କରି ଅଛନ୍ତି । ପାଶ୍ଚାତ୍ୟ ସାହିତ୍ୟର ଆହରଣ ମଧ୍ୟ "ମହାଯାତ୍ରା"ରେ ଦେଖା ଦେଇଅଛି । ଏହି କାବ୍ୟରେ ବର୍ଣ୍ଣିତ ପାଣ୍ଡବମାନଙ୍କର ସ୍ୱର୍ଗାରୋହଣ ନିମିତ୍ତ ରାଜ୍ୟରୁ ବାହାରି ତୀର୍ଥଯାତ୍ରା କରିବା ପ୍ରସଙ୍ଗ ମୂଳ ମହାଭାରତରୁ ଅଣା ଯାଇଅଛି । କଥାବସ୍ତୁ ମୂଳ ମହାଭାରତରୁ ଅଣାଯାଇଥିଲେ ହେଁ ବର୍ଣ୍ଣନାରେ କବିଙ୍କର କଳ୍ପନା ବିଳାସ ଯଥେଷ୍ଟ ପରିମାଣରେ ଦେଖାଯାଏ । ମହାଯାତ୍ରାର ରଚନା କୌଶଳରେ ପାଶ୍ଚାତ୍ୟ ରୀତି ପରିଦୃଷ୍ଟ ହୁଏ ।

୧୮୯୪ ସାଲରେ ରଚିତ "ଯଯାତି କେଶରୀ"ର କଥାବସ୍ତୁ ରାଧାନାଥଙ୍କର କଳ୍ପନା ପ୍ରସୂତ । ରାଧାନାଥ ଏହି କାବ୍ୟର କାଳ୍ପନିକ କଥାବସ୍ତୁକୁ ଇତିହାସ ସହିତ ଯୋଡ଼ି ଦେବାର ପ୍ରଚେଷ୍ଟା କରି ଉତ୍କଳରେ କେଶରୀ ବଂଶର ଅଭ୍ୟୁଦୟ ବିଷୟରେ ବର୍ଣ୍ଣନା କରିଛନ୍ତି । ମାତ୍ର ଓଡ଼ିଶା ଇତିହାସର ଯଯାତିକେଶରୀ ରାଧାନାଥଙ୍କ କାବ୍ୟ ନାୟକ ଯଯାତି କେଶରୀ ନୁହନ୍ତି । କାଳ୍ପନିକ ବା ଆହୃତ କଥାବସ୍ତୁ ମଧ୍ୟରେ ରାଧାନାଥ ଐତିହାସିକ ନାମ ବା ଘଟଣାକୁ ଅନେକତ୍ର ଯୋଡ଼ିଦେଇ ଓଡ଼ିଶାରେ ଗୋଟିଏ ଗୋଟିଏ ଅଦ୍ଭୁତ କିମ୍ବଦନ୍ତୀ

ବା ପରମ୍ପରା ସୃଷ୍ଟି କରିବାରେ ସମର୍ଥ ହେଲେ ହେଁ ପରବର୍ତ୍ତୀ-କାଳରେ ରାଧାନାଥଙ୍କର ଏହି ନିର୍ମାଣ କୌଶଳ ସ୍ପଷ୍ଟ ଭାବରେ ଧରାପଡ଼ି ଯାଇଅଛି । ଯଯାତିକେଶରୀ କାବ୍ୟ ରାଧାନାଥଙ୍କର ପ୍ରକୃଷ୍ଟ ପ୍ରତିଭାର ପରିଚୟ ଦିଏ ନାହିଁ ।

୧୮୯୪ ସାଲରେ ରାଧାନାଥ ଦରବାର କାବ୍ୟ ରଚନା କରିଛନ୍ତି । ଦରବାର କାବ୍ୟର କଥାବସ୍ତୁ ଯାହାହେଉନା କାହିଁକି ଏହା ଆଧୁନିକ ଓଡ଼ିଆ ସାହିତ୍ୟରେ ସାଟାୟାର୍ ବା ବ୍ୟଙ୍ଗ-ସାହିତ୍ୟ ଭାବରେ ଖ୍ୟାତ । ଏହି ଦରବାର କାବ୍ୟରେ କବି ପ୍ରଚଳିତ ସାମାଜିକ ପ୍ରଥାର ତୀକ୍ଷ୍ଣ ସମାଲୋଚନା କରିବା ସଙ୍ଗେ ସଙ୍ଗେ ଜଣେ ଉପଦେଷ୍ଟା ରୂପେ ଦେଖା ଦେଇଅଛନ୍ତି । ଦରବାର କାବ୍ୟରେ କବିବର ରାଧାନାଥ ନିଜ ଜୀବନର ବହୁ ଅନୁଭୂତିକୁ ଚିତ୍ରଣ କରି ତାହାର ଫଳାଫଳ ବିଷୟରେ ଜନସମାଜକୁ ସଚେତନ କରି ଅଛନ୍ତି । ଦରବାରର ପୃଷ୍ଠଭୂମି ଐତିହାସିକ ହେଲେ ହେଁ କବିଙ୍କର ବର୍ଣ୍ଣନାଶୈଳୀରେ ତାହା ଏକ ଉପଦେଶାତ୍ମକ କାବ୍ୟ-ରୂପ ଗ୍ରହଣ କରିଅଛି ।

୧୮୯୪ ସାଲରେ ପ୍ରକାଶିତ ତୁଳସୀ-ସ୍ତବକ ରାଧାନାଥଙ୍କୁ ଉପଦେଷ୍ଟା ଆସନରେ ଅଧିଷ୍ଠିତ କରିଥିଲା । ତୁଳସୀସ୍ତବକ ପାଠକରି ଏ ଦେଶର ପାଠକଗଣ ଏହାର ଆହରଣ କୌଶଳ ନଜାଣି ଏହାର ପ୍ରତ୍ୟେକ ନୀତି-ଉପଦେଶକୁ ଗୋଟିଏ ଗୋଟିଏ ତୁଳସୀ ପତ୍ର ରୂପେ ଗ୍ରହଣ କରି ନାମକରଣର ସାର୍ଥକତା ଉପଲ୍‌ବଧି କରିଥିଲେ । ମାତ୍ର ଏହା ସନ୍ଥ ତୁଳସୀଦାସଙ୍କ ରଚନାରୁ ସଂଗୃହୀତ କେତେକ ନୀତି ଉପଦେଶର ଅନୁବାଦ ବୋଲି ପରବର୍ତ୍ତୀ କାଳରେ ଜଣାପଡ଼ିଲା ।

କବିବର ରାଧାନାଥଙ୍କର ପ୍ରଧାନ ରଚନାଗୁଡ଼ିକର ନିର୍ମାଣ-କୌଶଳ ଓ ଆହରଣ ସୂତ୍ର ବିଷୟରେ ସାହିତ୍ୟ ସମାଲୋଚକଗଣ ବହୁ ଗବେଷଣା ପରେ ଉପରୋକ୍ତ ବିଷୟଗୁଡ଼ିକ ପ୍ରକାଶ କରି ଅଛନ୍ତି । ଏତଦ୍‌ବ୍ୟତୀତ କବିଙ୍କର ଅନ୍ୟ ଅନେକ ରଚନା ବିଷୟରେ ମଧ୍ୟ ବହୁ ଆଲୋଚନା ପ୍ରକାଶ ପାଇଅଛି । ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟା କବିବର ରାଧାନାଥ ଆଧୁନିକ ଓଡ଼ିଆ ସାହିତ୍ୟର ଯେଉଁ ଭିତ୍ତି-ପ୍ରସ୍ତର ସ୍ଥାପନ କରିଥିଲେ, ତାହା ଏପରି ସୁଦୃଢ଼ ଯେ ପରବର୍ତ୍ତୀ କାଳରେ ତାହା ଉପରେ ନିର୍ମିତ ପ୍ରକାଣ୍ଡ ସାହିତ୍ୟ-ସୌଧ ଏ ପର୍ଯ୍ୟନ୍ତ ରହିଅଛି ।

## କେଦାରଗୌରୀ—

କେଦାର ଏବଂ ଗୌରୀଙ୍କର ଅମର ପ୍ରେମର ଚିତ୍ର ଏଥିରେ ରାଧାନାଥ ଅଙ୍କନ କରିଅଛନ୍ତି । ଭୁବନେଶ୍ୱରରେ କେଦାର ଓ ଗୌରୀଙ୍କର ଘର । ପିଲାଟି ଦିନରୁ ଦୁହେଁ ଦୁହିଁଙ୍କୁ ଭଲ ପାଇଥିଲେ । ପିଲାଦିନର ଏହି ଭଲପାଇବା ଯୌବନରେ ପ୍ରେମରେ ପରିଣତ ହୋଇଥିଲା । ଦୁହିଁଙ୍କର ଦେଖାସାକ୍ଷାତ ପାଇଁ ସୁବିଧା ନ ଥିବାରୁ ଦୁହିଁଙ୍କ ଘରର ମଝିରେ ଥିବା ଏକ କାନ୍ଥର ଛିଦ୍ରବାଟେ ଦୁହେଁ କଥାଭାଷା ହେଉଥିଲେ । ଦୁହିଁଙ୍କ ମିଳନ ଅସମ୍ଭବ ମଣି ଦୁହେଁ ଦିନେ ସ୍ଥିର କଲେ ଯେ ଘରଗୁଡ଼ି ପଳାଇ ନ ଗଲେ ତାଙ୍କର ପ୍ରେମ ସଫଳ ହେବା ଅସମ୍ଭବ । ତେଣୁ ଦୁହେଁ ଗୋଟିଏ ଦିନ ସ୍ଥିର କରି ଘରଗୁଡ଼ି ପଳାଇଯିବାକୁ ଠିକ୍ କଲେ । ନିର୍ଦ୍ଧାରିତ ଦିନ ସନ୍ଧ୍ୟା ହେବା ପରେ ଗୌରୀ ଗୃହତ୍ୟାଗ କରି ଅଦୂରସ୍ଥ ଜଙ୍ଗଲରେ କେଦାରକୁ ଅପେକ୍ଷା କଲା । ହଠାତ୍ ବନରେ ଏକ ବ୍ୟାଘ୍ରକୁ ଦେଖି ଗୌରୀ ଏକ ଗୁହାରେ ଲୁଚିଗଲା । ବ୍ୟାଘ୍ରକୁ ଦେଖି ଡରିଡରିରେ ଗୁହାକୁ

ପଳାଇଯିବା ସମୟରେ ଗୌରୀର ଉତ୍ତରୀୟଟି ଖସି ତଳେ ପଡ଼ିଯାଇଥିଲା । ବ୍ୟାଘ୍ରଟି ଜଳପାନ କରିବାକୁ ନିକଟବର୍ତ୍ତୀ ଝରଣାକୁ ଯାଇ ଫେରିବା ସମୟରେ ଗୌରୀର ଉତ୍ତରୀୟକୁ ଦାନ୍ତରେ ଚିରାଇ ପକାଇ ଦେଇଥିଲା । ଚିରିଯାଇଥିବା ଉତ୍ତରୀୟରେ ବ୍ୟାଘ୍ର ମୁହଁରୁ ରକ୍ତ ଲାଗିଥିଲା । କେଦାର ପଛରେ ଆସି ଗୌରୀକୁ ନିର୍ଦ୍ଦିଷ୍ଟ ସ୍ଥାନରେ ନ ଦେଖି ମନରେ ବହୁ ଆଶଙ୍କା କରିବା ସମୟରେ ହଠାତ୍ ତଳେ ଚିରା ପଡ଼ିଥିବା ଉତ୍ତରୀୟକୁ ଦେଖିଲା । ତାର ମନେହେଲା, ଗୌରୀକୁ କୌଣସି ହିଂସ୍ରଜନ୍ତୁ ଖାଇ ଯାଇଅଛି । ଦୁଃଖରେ ଅଧୀର ହୋଇ କେଦାର ଏକ ଛୁରୀ ସାହାଯ୍ୟରେ ଆତ୍ମହତ୍ୟା କଲା । କେଦାର ଛୁରୀ ଆଘାତରେ ପଡ଼ି ଛଟପଟ ହେଉଥିବା ସମୟରେ ଗୌରୀ ଗୁହାରୁ ଆସି ତାକୁ ଦେଖିଲା ଏବଂ ଆକୁଳ ଭାବରେ କ୍ରନ୍ଦନ କରି କେଦାରର ପଥ ଅନୁସରଣ କଲା । ପ୍ରଣୟୀ ଓ ପ୍ରଣୟିନୀ ଦୁହେଁ ସେହି ସ୍ଥାନରେ ପଡ଼ି ପ୍ରାଣତ୍ୟାଗ କଲେ । ଲଲାଟକେଶରୀ ସ୍ୱପ୍ନାଦେଶ ପାଇ ପ୍ରତ୍ୟୁଷରେ ଯାଇ କେଦାର ଓ ଗୌରୀଙ୍କର ମୃତଶରୀର ଦେଖିଲେ । ଏକାମ୍ର ନଗରର ଲୋକମାନେ କେଦାର ଏବଂ ଗୌରୀଙ୍କର ଗୁଣ ସୁମରି ଦୁଃଖର ସହିତ ସେମାନଙ୍କର ସଂସ୍କାର କଲେ ଓ ନରପତି ଲଲାଟକେଶରୀଙ୍କ ଆଦେଶରେ ସେହି ସ୍ଥାନରେ ଏକ ମନ୍ଦିର ନିର୍ମିତ ହୋଇ କେଦାର ଓ ଗୌରୀଙ୍କ ନାମାନୁସାରେ ପ୍ରତିମା ସ୍ଥାପିତ ହେଲେ ।

ଏହି କାବ୍ୟର କଥାବସ୍ତୁ ଉତ୍କଳରେ ଅତ୍ୟନ୍ତ ଜନପ୍ରିୟତା ଲାଭ କରିଅଛି । ଏବେ ମଧ୍ୟ ଭୁବନେଶ୍ୱରର କେଦାର-ଗୌରୀ ପୀଠକୁ ଲୋକମାନେ ରାଧାନାଥଙ୍କର ଏହି ସୃଷ୍ଟି କମନୀୟ

ଅନୁସାରେ ଦେଖିଥାଆନ୍ତି । କେଦାର-ଗୌରୀର କଥାବସ୍ତୁକୁ ଆଶ୍ରୟ କରି ଓଡ଼ିଆ ଭାଷାରେ ଏକ ଚଳଚ୍ଚିତ୍ର ମଧ୍ୟ ନିର୍ମିତ ହୋଇଅଛି । ରାଧାନାଥଙ୍କର ଆଦରଣ ଯାହା ଥାଉନା କାହିଁକି, ଏହି କାବ୍ୟର କଥାବସ୍ତୁ ଓଡ଼ିଶାରେ ଜନପ୍ରିୟତା ଲାଭ କରିଅଛି ।

## ଚନ୍ଦ୍ରଭାଗା—

ପୁଷ୍ୟାଭିଷେକ ଉପଲକ୍ଷେ ଦେବଦେବୀମାନେ ଜଗନ୍ନାଥଙ୍କ ଦର୍ଶନ ନିମିତ୍ତ ଜଗନ୍ନାଥଙ୍କ ମନ୍ଦିରର ସିଂହଦ୍ୱାରରେ ସମବେତ ହୋଇଥିଲେ । କବି ବହୁ ଦେବଦେବୀଙ୍କର ଉଲ୍ଲେଖ କରିଅଛନ୍ତି । ସିଂହଦ୍ୱାରରେ ସୂର୍ଯ୍ୟଦେବ ଉପସ୍ଥିତ ଥିଲେ । କନ୍ଦର୍ପ ଏବଂ ରତି ପଛରେ ଆସି ମଧ୍ୟ ଅନ୍ୟମାନଙ୍କୁ ଭ୍ରୂକ୍ଷେପ ନ କରି ଆଗେ ମନ୍ଦିରକୁ ପଶିଗଲେ । ଏହା ସୂର୍ଯ୍ୟଦେବଙ୍କୁ ଅସହ୍ୟ ହେଲା । ସେ କନ୍ଦର୍ପଙ୍କୁ ତିରସ୍କାର କଲେ । କନ୍ଦର୍ପ ନିଜର ପରାକ୍ରମ ବିଷୟ ବର୍ଣ୍ଣନା କରି ସୂର୍ଯ୍ୟଙ୍କଠାରୁ ପ୍ରତିଶୋଧ ନେବେ ବୋଲି ମନରେ ପାଞ୍ଚିଲେ । ଜଗନ୍ନାଥଙ୍କ ଦର୍ଶନ ଶେଷ କରି ଦେବଦେବୀମାନେ ନିଜ ନିଜ ସ୍ଥାନକୁ ଫେରିଗଲେ । ଫେରିବା ପଥରେ କନ୍ଦର୍ପ ନିଜର ପ୍ରତିଶୋଧ ନେବାପାଇଁ ସୁଯୋଗ ପାଇଲେ ।

ସୁମନ୍ୟୁଙ୍କ ଔରସରେ ସାଗର ଅପ୍ସରୀ ଗର୍ଭରୁ ଜାତ ଚନ୍ଦ୍ରଭାଗାଙ୍କର ସୌନ୍ଦର୍ଯ୍ୟ ଅତୁଳନୀୟ ଥିଲା । ଚନ୍ଦ୍ରଭାଗା ପିଲାଟି ଦିନରୁ ପୁରୁଷଜାତି ପ୍ରତି ଅନାସକ୍ତା । ଯୌବନ ସମୟରେ ପ୍ରେମ ବିଷୟରେ ତାଙ୍କର ମଧ୍ୟ ସେହି ଅନାସକ୍ତ ଭାବ । ତେଣୁ ପୁରୁଷ ଜାତି ପ୍ରତି ସେ ସର୍ବଦା ସତର୍କ । ବେଲେଶ୍ୱର ନାମକ ସ୍ଥାନରେ ଚନ୍ଦ୍ରଭାଗା କନ୍ଦୁକ କ୍ରୀଡ଼ାରେ ରତ ଥିବା ସମୟରେ କନ୍ଦର୍ପ ତାଙ୍କୁ ଦେଖିବାକୁ

ଯାଇ ତାଙ୍କର ଦ୍ୱାରା ସୂର୍ଯ୍ୟଙ୍କଠାରୁ ପ୍ରତିଶୋଧ ନେବା ଇଚ୍ଛାରେ ପ୍ରସ୍ତୁତ ହେଲେ । ସୂର୍ଯ୍ୟଦେବ କୋଣାର୍କରୁ ଆକାଶ ପଥରେ ଆସିବା ସମୟରେ ଅପରୂପ ସୁନ୍ଦରୀ ଚନ୍ଦ୍ରଭାଗାଙ୍କୁ ଦେଖି ତାଙ୍କ ପ୍ରତି ଆସକ୍ତ ହେଲେ । କନ୍ଦର୍ପ ସୂର୍ଯ୍ୟଦେବଙ୍କ ପ୍ରତି ସମ୍ମୋହନ ବାଣ ପ୍ରୟୋଗ କଲେ ଏବଂ ଚନ୍ଦ୍ରଭାଗାଙ୍କ ପ୍ରତି ତାଙ୍କ ପଞ୍ଚଶରକୁ ଓଲଟା ପ୍ରୟୋଗ କଲେ । ଫଳରେ ସୂର୍ଯ୍ୟଦେବ ଚନ୍ଦ୍ରଭାଗାଙ୍କ ପ୍ରତି ଆସକ୍ତ ହେଲେ ଓ ଚନ୍ଦ୍ରଭାଗା ସୂର୍ଯ୍ୟଦେବଙ୍କର ଆସକ୍ତି ପ୍ରତି ବିତୃଷ୍ଣା ଭାବ ପ୍ରକାଶ କଲେ । ସୂର୍ଯ୍ୟଦେବ ବ୍ରାହ୍ମଣବେଶ ଧରି ଚନ୍ଦ୍ରଭାଗାଙ୍କ ନିକଟରେ ପ୍ରେମ ନିବେଦନ କରିବା ସମୟରେ ଚନ୍ଦ୍ରଭାଗା ଭୟଭୀତା ହୋଇ ପଳାୟନ କଲେ । ସୂର୍ଯ୍ୟଦେବ ବହୁ ପ୍ରକାର କାକୁତି ମିନତି କରି ଚନ୍ଦ୍ରଭାଗାଙ୍କ ପଥ ଅନୁସରଣ କଲେ । ସୂର୍ଯ୍ୟଦେବ ଯେତେ ଅନୁନୟ କରି ଡାକିଲେ ମଧ୍ୟ ଚନ୍ଦ୍ରଭାଗା ଶୁଣିଲେ ନାହିଁ ଓ ସେ ଦଉଡ଼ି ଦଉଡ଼ି ସମୁଦ୍ର କୂଳରେ ପହଞ୍ଚିଲେ । ସେଠାରେ ନିଜର ମାନ-ସମ୍ମାନ ରକ୍ଷାକରିବା ପାଇଁ ମାତାଙ୍କୁ ନିବେଦନ କଲେ । ଏହି ନିବେଦନ ଫଳରେ ହଠାତ୍ ସମୁଦ୍ରର ଏକ ବିରାଟ ତରଙ୍ଗ ଆସି ଚନ୍ଦ୍ରଭାଗାଙ୍କୁ ଭସାଇନେଲା । ଚନ୍ଦ୍ରଭାଗାଙ୍କର ଏପରି ଆଚରଣ ଦେଖି ସୂର୍ଯ୍ୟଦେବ ଖିନ୍ନ ହେଲେ । ହଠାତ୍ ସେ ଦେଖିବାକୁ ପାଇଲେ ଯେ ତାଙ୍କର କୋଣାର୍କ ମନ୍ଦିର ଭାଙ୍ଗିପଡ଼ି ଧୂଳିସାତ୍ ହୋଇଯାଇଛି । କାରଣ ରୂପେ ସେ ଜାଣିଲେ ଯେ ତପସ୍ୱୀ ସୁମନ୍ୟୁଙ୍କର ଅଭିଶାପ ଫଳରେ ତାଙ୍କର ମନ୍ଦିର ଭାଙ୍ଗିଗଲା । କନ୍ଦର୍ପଙ୍କ ପ୍ରତିଶୋଧରେ କ୍ଷୁବ୍ଧ ହୋଇ ସୂର୍ଯ୍ୟଦେବ ନିଜସ୍ଥାନକୁ ଫେରିଗଲେ ଓ ସେହିଦିନଠାରୁ କୋଣାର୍କରୁ ସୂର୍ଯ୍ୟପୂଜା ବିଧାନ ଉଠିଗଲା । କବିବର ରାଧାନାଥ କୋଣାର୍କ ମନ୍ଦିର ସହିତ ଏହି କଥାବସ୍ତୁକୁ ସଂଲଗ୍ନ କରିଅଛନ୍ତି ।

## ନନ୍ଦକେଶ୍ୱରୀ—

ଚୋଡ଼ଗଙ୍ଗଦେବ ଦାକ୍ଷିଣାତ୍ୟରୁ ଆସି ଉତ୍କଳକୁ ଜୟ କରିବା ନିମିତ୍ତ ଯୁଦ୍ଧ କରୁଥିଲେ । ଉତ୍କଳକୁ ଅଧିକାର କରି ଶାସନ କରିବା କେବଳ ତାଙ୍କର ଲକ୍ଷ୍ୟ ନ ଥିଲା । ତାଙ୍କର ଲକ୍ଷ୍ୟ ଥିଲା ଉତ୍କଳରେ ତତ୍କାଳୀନ ପ୍ରଚଳିତ ଶାକ୍ତମତ ପରିବର୍ତ୍ତେ ବୈଷ୍ଣବମତ ପ୍ରଚାର କରିବା । ଚୋଡ଼ଗଙ୍ଗଙ୍କର ଅମିତ ପରାକ୍ରମ ବିଷୟ ଜାଣି ଉତ୍କଳର ମନ୍ତ୍ରୀ ବାସୁଦେବ ଉତ୍କଳକେଶରୀ ସୁବର୍ଣ୍ଣ କେଶରୀଙ୍କୁ ଚୋଡ଼ଗଙ୍ଗଙ୍କ ସହିତ ସନ୍ଧି କରିବା ପାଇଁ ପ୍ରସ୍ତାବ ଦେଲେ । ବାସୁଦେବ ପ୍ରସ୍ତାବ ଦେଲେ ଯେ ଚୋଡ଼ଗଙ୍ଗଙ୍କ ସହିତ ସନ୍ଧିକରି ତାଙ୍କୁ ନନ୍ଦକେଶ୍ୱରୀଙ୍କ ସହିତ ବିବାହ କରାଇ ଉତ୍କଳ ସିଂହାସନର ଉତ୍ତରାଧିକାରୀ ରୂପେ ଗ୍ରହଣ କରାଯାଉ । ମାତ୍ର ସୁବର୍ଣ୍ଣକେଶରୀ ବାସୁଦେବଙ୍କର ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିବାରୁ ବାସୁଦେବ ବାରାଣସୀ ଦୁର୍ଗ ପରିତ୍ୟାଗ କରି ଚୋଡ଼ଗଙ୍ଗଙ୍କର ପକ୍ଷ ଗ୍ରହଣ କଲେ । ବାସୁଦେବ ଚୋଡ଼ଗଙ୍ଗଙ୍କର ପ୍ରଧାନ ଉପଦେଷ୍ଟା ହେଲେ ଓ ତାଙ୍କରି ନିର୍ଦ୍ଦେଶରେ ଦୁର୍ଗ ଅବରୋଧ କରାଗଲା ।

ଯୁଦ୍ଧକ୍ଷେତ୍ରରେ ଯୁଦ୍ଧ ଚାଲିଥିବା ସମୟରେ ନନ୍ଦିକା ଚନ୍ଦ୍ରଶାଳାପୁରରେ ରହି ଯୁଦ୍ଧ ଦେଖୁଥିଲେ । ଚୋଡ଼ଗଙ୍ଗଙ୍କର ସୌମ୍ୟମୂର୍ତ୍ତି ଦେଖି ନନ୍ଦିକା ଏତେଦୂର ମୁଗ୍ଧ ହେଲେ ଯେ ନିଜକୁ ତାଙ୍କ ନିକଟରେ ସମର୍ପଣ କରି ତାଙ୍କୁ ପତିରୂପେ ପାଇବା ପାଇଁ ବ୍ୟଗ୍ର ହେଲେ । ରାଜଜେମା ଚୋଡ଼ଗଙ୍ଗଙ୍କୁ ପାଇବା ପାଇଁ ଏକାବେଳକେ ଅଧିର୍ଣ୍ଣୀ ହୋଇଗଲେ ।

ବଳଶାଳୀ ଶତ୍ରୁକୁ ପରାଜିତ କରି ନ ପାରି ସୁବର୍ଣ୍ଣକେଶରୀ ଚଣ୍ଡିକାଙ୍କର ଶରଣାପନ୍ନ ହେଲେ । ଚଣ୍ଡିକା ସ୍ୱପ୍ନାଦେଶ ଦେଲେ ଯେ ଗୈରଗଙ୍ଗ ଗଙ୍ଗାଙ୍କର ସନ୍ତାନ । ଗଙ୍ଗା ଶିବଙ୍କୁ ପ୍ରଭାବିତ କରିଛନ୍ତି । ତେଣୁ ଶିବଙ୍କ ବଳରେ ବଳୀୟାନ ଗୈରଗଙ୍ଗଙ୍କୁ ସମ୍ମୁଖ ସଂଗ୍ରାମରେ ପରାସ୍ତ କରିବା ଅସମ୍ଭବ । ଚଣ୍ଡିକାଙ୍କର ଆଜ୍ଞା ଅନୁସାରେ ସୁବର୍ଣ୍ଣକେଶରୀ ମସ୍ତକରେ ଜୈବମଣି ପିନ୍ଧିଲେ ଓ ଏହି ଜୈବମଣି ତାଙ୍କ ମସ୍ତକରୁ ଅପହୃତ ହେଲେ ସୁବର୍ଣ୍ଣ-କେଶରୀଙ୍କର ପରାଜୟ ନିଶ୍ଚିତ । ତେଣୁ ସେ ମସ୍ତକରେ ମଣି ଧାରଣ କରି ଗଡ଼ଦ୍ୱାର ଅବରୁଦ୍ଧ କରି ରହିଲେ ।

ନନ୍ଦିକା ଗୈରଗଙ୍ଗଙ୍କର ପ୍ରେମରେ ପାଗଳିନୀ । ସେ ଯେତେ-ବେଳେ ଶୁଣିଲେ ଯେ ଗୈରଗଙ୍ଗ ପୁଣି ଦାକ୍ଷିଣାତ୍ୟକୁ ଫେରିଯିବେ, ସେତେବେଳେ ସେ ବିଗ୍ଭରଶକ୍ତ ହୋଇ ବସିଲେ । ରାତିର ଅନ୍ଧକାରରେ, ଯେତେବେଳେ କି ସମଗ୍ର ଦୁର୍ଗବାସୀ ନିଦ୍ରିତ ସେତିକିବେଳେ ନନ୍ଦିକା ଧୀରେ ପଦକ୍ଷେପରେ ଯାଇ ପିତାଙ୍କ ମସ୍ତକରୁ ମଣିଟି ଗ୍ଭେରିଇ ଆଣି ଗୈରଗଙ୍ଗଙ୍କ ଶିବିରକୁ ଗଲେ । ଗୈରଗଙ୍ଗ ତାଙ୍କୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ନନ୍ଦିକା ମଣିଟି ଗୈରଗଙ୍ଗଙ୍କୁ ସମର୍ପଣ କରି ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କରିବା ପରେ ଗୈରଗଙ୍ଗ ନନ୍ଦିକାଙ୍କର ଏ ପ୍ରକାର କାର୍ଯ୍ୟପାଇଁ ତାଙ୍କୁ ଭର୍ତ୍ସନା କଲେ ଓ ତାଙ୍କର ପ୍ରେମକୁ ନିଷ୍ଠୁରଭାବରେ ପ୍ରତ୍ୟାଖ୍ୟାନ କଲେ । ଗୈରଗଙ୍ଗ ଶିବିକା ଆୟୋଜନ କରି ନନ୍ଦିକାଙ୍କୁ ତାଙ୍କ ପିତାଙ୍କ ନିକଟକୁ ପଠାଇଦେଲେ । ଶିବିକା ଆସି ବଡ଼ାନାସୀ ଦୁର୍ଗରେ ରହିଲା । ଉତ୍କଳେଶ୍ୱର ଶିବିକା ନିକଟକୁ ଆସି ଦେଖିଲେ ଯେ କନ୍ୟାଙ୍କ ଶରୀରରେ ପ୍ରାଣ ନାହିଁ । କନ୍ୟା ଖଣ୍ଡିଏ ପତ୍ର ପିତାଙ୍କ ନିକଟକୁ ଲେଖିଯାଇଥିଲେ । ସେଥିରେ ସେ ନିଜର

ଅସଫଳ ପ୍ରଚେଷ୍ଟା ପାଇଁ ନିଜକୁ ଦାୟୀ କରିବା ସଙ୍ଗେ ସଙ୍ଗେ ପିତାଙ୍କୁ ଅନୁରୋଧ କରିଥିଲେ ଯେ ଚୈରଗଙ୍ଗଙ୍କୁ ବାତ୍ସଲ୍ୟସ୍ନେହରେ ଦେଖି ଯେପରି ନିଜର ପୁତ୍ରରୂପେ ଗ୍ରହଣ କରନ୍ତୁ । ସୁବର୍ଣ୍ଣକେଶରୀ ଏପରି ଅବସ୍ଥାରେ ପଡ଼ି ଚୈରଗଙ୍ଗଙ୍କୁ ଉତ୍କଳର ସିଂହାସନ ପ୍ରଦାନ କରି ମହାନଦୀ ତୀରବର୍ତ୍ତୀ ଅରଣ୍ୟରେ ବାସକଲେ । ତେମାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ପରେ ସମାଧି ନିର୍ମିତ ହେଲା । ଚୈରଗଙ୍ଗ ଉତ୍କଳ ସିଂହାସନ ଆରୋହଣ କରି ଜୈବମଣିଟିକୁ ଶ୍ରୀକ୍ଷେତ୍ରକୁ ପଠାଇ ଦେଲେ । ବହୁକାଳ ପର୍ଯ୍ୟନ୍ତ ଏହି ମଣିଟି ଜଗନ୍ନାଥଙ୍କ ମସ୍ତକରେ ଶୋଭା ପାଇଥିଲା । ବଡ଼ାନାସୀ ଦୁର୍ଗର ପତନ ଘଟିଅଛି, ମାତ୍ର ନାମଟି ଏ ପର୍ଯ୍ୟନ୍ତ ରହିଅଛି ।

**ଊଷା—**

ମହାପ୍ରତାପୀ ରାଜା ନୁରୁ ନଦୀଗର୍ଭରୁ ଶ୍ୟାମାମୂର୍ତ୍ତିଟିଏ ପାଇ ମନ୍ଦିରରେ ସ୍ଥାପନ କରି ନଗରର ଅଧିଷ୍ଠାତ୍ରୀ ରୂପେ ତାଙ୍କୁ ପୂଜା ଅର୍ଚ୍ଚନା କରୁଥିଲେ । ରାଜା ନୁରୁ ଜଣେ ସୁଦକ୍ଷ ଶିକାରୀ ଥିଲେ । ମାତ୍ର ସେ ନିଃସନ୍ତାନ ଥିବାରୁ ଅଧିକାଂଶ ସମୟ ମନ ମଧ୍ୟରେ ଦୁଃଖିତ ରହୁଥିଲେ । ଦିନେ ରାତିରେ ତାଙ୍କର ମହିଷୀ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ସେ ଦେଖିଲେ ଯେ; ଏକ ଅଦ୍ଭୁତ ଜ୍ୟୋତି ଆକାଶରେ ଦେଖାଦେବା ସଙ୍ଗେ ସଙ୍ଗେ ଦୁଇ ଭାଗରେ ବିଭକ୍ତ ହୋଇ ଗୋଟିଏ ଭାଗ ତାଙ୍କ ନିକଟକୁ ଆସିଲା ଏବଂ ଅପର ଭାଗଟି ବାୟୁବ୍ୟ ଦିଗକୁ ଚାଲିଗଲା । ତାଙ୍କ ପାଖକୁ ଆସିଥିବା ଜ୍ୟୋତିରୁ ସେ ଏକ ଖର୍ବକାୟାବିଶିଷ୍ଟାନାରୀଙ୍କୁ ଦେଖିବାକୁ ପାଇଲେ ଏବଂ ସେହି ଜ୍ୟୋତି ରାଣୀଙ୍କ ଉଦରରେ ପ୍ରବେଶ କଲା । ରାଣୀଙ୍କର ନିଦ୍ରା ଭାଙ୍ଗିଗଲା ଓ ସେ ରାଜାଙ୍କ ଆଗରେ ସ୍ୱପ୍ନର ବୃତ୍ତାନ୍ତ ବର୍ଣ୍ଣନା

କଲେ । ରାଜା ଗଣକଙ୍କୁ ଡକାଇ ବୁଝିଲେ ଯେ ଏହା ଏକ ଦିବ୍ୟ କନ୍ୟାଜନ୍ମର ସଙ୍କେତ । ଏହାର ଦଶ ମାସ ପରେ ରାଣୀଙ୍କ ଗର୍ଭରୁ ଊଷାଙ୍କର ଜନ୍ମ । ଊଷାଙ୍କର ସୌନ୍ଦର୍ଯ୍ୟ ବାଲ୍ୟକାଳରୁ ପ୍ରକାଶ ପାଇଲା ।

ରାଜା ପାରଧିକୁ ଯିବା ସମୟରେ ନିଜର କନ୍ୟାଙ୍କୁ ହାତଦାରେ ନେଇଯାଆନ୍ତି । ତେଣୁ ବାଲ୍ୟାବସ୍ଥାରୁ ଊଷା ପିତାଙ୍କର ମୃଗୟା କୌଶଳ ଲକ୍ଷ୍ୟ କରି ମୃଗୟାରେ ଅଭ୍ୟସ୍ତା ହୋଇ ପଡ଼ିଲେ । ଯୌବନ ସମୟ ଉପଗତ ହୁଅନ୍ତେ ଊଷାଙ୍କର କଳେବର ଅପରୂପ ଶ୍ରୀରେ ମଣ୍ଡିତ ହେଲା । ମାତ୍ର ଊଷା ସାଧାରଣ ରାଜନନ୍ଦିନୀଙ୍କ ପରି ରାଜଅନ୍ତଃପୁରରେ ଆବଦ୍ଧା ନ ରହି ସଙ୍ଗରେ ସଖୀମାନଙ୍କୁ ନେଇ ପାରଧିରେ ଯାଇ ନିଜର ଅପୂର୍ବ ମୃଗୟା କୌଶଳ ପ୍ରଦର୍ଶନ କଲେ । ସୌନ୍ଦର୍ଯ୍ୟ ସହିତ ଶୌର୍ଯ୍ୟର ମିଶ୍ରଣରେ ଊଷା ଅତୀବ ମହିମମୟୀ ହୋଇ ପଡ଼ିଲେ । ତାଙ୍କର ଗତିର ବେଗ ଅପ୍ରତିଦ୍ୱନ୍ଦୀ ବୋଲି ପ୍ରକାଶ ପାଇଲା । ତାଙ୍କର ବିବାହ ନିମିତ୍ତ ରାଜା ଏକ ଅଦ୍ଭୁତ ପଣ ରଖିଲେ । ତାହା ହେଉଛି, ଯେଉଁ ରାଜକୁମାର ଊଷାଙ୍କ ସହିତ ଦୌଡ଼ରେ ଯୋଗଦେଇ ଊଷାଙ୍କୁ ପରାଜିତା କରିବେ, ସେ ଊଷାଙ୍କର ପାଣିଗ୍ରହଣ କରିବେ; ଯଦି ଊଷାଙ୍କୁ ପରାଜିତା ନକରି ନିଜେ ପରାଜିତ ହେବେ, ତେବେ ତାଙ୍କୁ ପ୍ରାଣଦଣ୍ଡ ଦିଆଯିବ । ଏହି ପଣ ପ୍ରକାଶ ପାଇବା ପରେ ଊଷାଙ୍କ ପ୍ରତି ଆକୃଷ୍ଟ ହୋଇ ବହୁ ରାଜକୁମାର ଊଷାଙ୍କ ସହିତ ପ୍ରତିଦ୍ୱନ୍ଦିତା କରି ପ୍ରାଣବଳି ଦେଲେ । ଏହି ରାଜକୁମାରମାନଙ୍କ କଥାପ୍ରସଙ୍ଗରେ କବି ବହୁ ରାଜାର ପ୍ରାକୃତିକ ଚିତ୍ର ସୁନ୍ଦର ଭାବରେ ଅଙ୍କନ କରିଅଛନ୍ତି ।

ଦିନେ ବନ ମଧ୍ୟରେ ଶିକାର କରିବା ସମୟରେ ଉଷା ଏକ ବନ୍ୟଶୂକରକୁ ଶର ନିକ୍ଷେପ କଲେ । ଶରଟି ଶୂକର ଦେହରେ ଭେଦ ହେଲା ସତ, ମାତ୍ର ହଠାତ୍ କୌଣସି ଅଜଣା ଶିକାରୀଙ୍କର ଶର ନିକ୍ଷେପ ଯୋଗୁଁ ଅଧବାଟରେ ପଡ଼ି ଶୂକରଟି ପ୍ରାଣତ୍ୟାଗ କଲା । କାହାର ଶର ବୋଲି ଉଷା ବା ତାଙ୍କର ସଖୀମାନେ ଜାଣି ପାରିଲେ ନାହିଁ; ମାତ୍ର ସେହି ଶରରେ "ଜୟନ୍ତ" ନାମ ଲେଖାଥିବାର ଦେଖିଲେ ।

ହେମପୁର ରାଜା ବାହନପତିଙ୍କର ପୁତ୍ର ଜୟନ୍ତ । ବିଦ୍ୟାରେ ତାଙ୍କର ଯେପରି ପାଣ୍ଡିତ୍ୟ ଥିଲା, ଧନୁର୍ବିଦ୍ୟାରେ ସେହିପରି ଅପୂର୍ବ ଦକ୍ଷତା ଥିଲା । କାର୍ତ୍ତିକେୟଙ୍କଠାରୁ ସେ ବର ପାଇଥିବା କଥା କବି ବର୍ଣ୍ଣନା କରିଅଛନ୍ତି । କାବ୍ୟର କଥାବସ୍ତୁ ସହିତ ପୌରାଣିକତାର ମିଶ୍ରଣ କରି କବି ନିଜର କାବ୍ୟ ନିର୍ମାଣକୌଶଳର ପରିଚୟ ଦେଇଅଛନ୍ତି ।

ଉଷା ସ୍ୱୟମ୍ବର ସମ୍ବାଦ ପାଇ ଜୟନ୍ତ ଉଷାଙ୍କୁ ପାଇବା ଆଶାରେ ଆଗ୍ରହୀ ହୋଇ ପଡ଼ିଲେ । ମୃଗୟା ଉଦ୍ଦେଶ୍ୟରେ ବନରେ ବୁଲୁଥିବା ଅବସ୍ଥାରେ ଜୟନ୍ତ ଉଷାଙ୍କୁ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ । ସ୍ୱୟମ୍ବର ନିମନ୍ତେ ସେ ପ୍ରତିଦ୍ୱନ୍ଦ୍ୱିତାରେ ଯୋଗଦେବା ପାଇଁ ପ୍ରାର୍ଥୀ ହେଲେ ଏବଂ ଉପଯୁକ୍ତ ସମୟରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହେଲା । ଦଉଡ଼ିବା ସମୟରେ ଜୟନ୍ତଙ୍କ ପ୍ରତି କାର୍ତ୍ତିକେୟଙ୍କର ସହାୟତା ବର୍ଷିତ ହୋଇଅଛି । ସେ ଯାହାହେଉ ନା କାହିଁକି, ଜୟନ୍ତ ଏହି ପ୍ରତିଯୋଗିତାରେ ବିଜୟୀ ହେଲେ ।

ଜୟନ୍ତଙ୍କ ସହିତ ଉଷାଙ୍କର ପରିଣୟ ସମ୍ପନ୍ନ ହେଲା । ଉଷା ଓ ଜୟନ୍ତଙ୍କର ମିଳନ ଅତୀବ ଚିତ୍ତାକର୍ଷକ ହୋଇଥିଲା । ସେହି

ମିଳନ ସମୟରେ ଦେଖାଗଲା ଯେ ଉଷା ଓ ଜୟନ୍ତ ଉଭୟେ ପ୍ରାଣତ୍ୟାଗ କରିଅଛନ୍ତି । ଏପରି ଏକ ବିଷାଦପୂର୍ଣ୍ଣ ପରିସ୍ଥିତରେ ବ୍ୟଥିତ ହୋଇ ରାଜା ମୂର୍ଚ୍ଛିତ ଅବସ୍ଥାରେ ଏକ ସ୍ୱପ୍ନ ଦେଖିଲେ । ସ୍ୱପ୍ନରେ କାଳୀ ରାଜାଙ୍କୁ କହିଲେ ଯେ ଉଷା ଓ ଜୟନ୍ତଙ୍କର ମୃତ୍ୟୁ ବିଧିନିର୍ଦ୍ଦିଷ୍ଟ । ଏହି ପ୍ରସଙ୍ଗରେ ଉଷା ଓ ଜୟନ୍ତଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣିତ ।

ପଞ୍ଚଲିଙ୍ଗ ଶୈଳରେ ଥରେ ଚତୁର୍ଦ୍ଦଶୀ ତିଥିରେ ରାତ୍ରି ସମୟରେ ଏକ ଉତ୍ସବ ଅନୁଷ୍ଠିତ ହେଉଥିଲା । ସେହି ଉତ୍ସବରେ ଗନ୍ଧର୍ବମାନେ ନୃତ୍ୟ ପ୍ରଦର୍ଶନ କରୁଥିଲେ । ଚିତ୍ରରଥ ଶିବ ରୂପରେ ଓ ତିଲୋତ୍ତମା ପାର୍ବତୀ ରୂପରେ ନୃତ୍ୟ ପ୍ରଦର୍ଶନ କରୁଥିଲେ । ନୃତ୍ୟ ଦେଖିବା ଲାଗି ସ୍ୱର୍ଗ, ମର୍ତ୍ତ୍ୟ ସବୁଠାରୁ ଦେବ-ଦେବୀମାନେ ସେହି ସ୍ଥାନକୁ ଆସିଥିଲେ । କାଳୀ ଯେତେବେଳେ ନୃତ୍ୟ ଦେଖିବା ପାଇଁ ଯାଇ ସେଠାରେ ପହଞ୍ଚିଲେ, ତାଙ୍କର ରୂପଦେଖି ସେଠାରେ ଉପସ୍ଥିତଥିବା ଗନ୍ଧର୍ବମାନେ ହସିବାକୁ ଲାଗିଲେ । ଚିତ୍ରରଥ ଓ ତିଲୋତ୍ତମା ଭାବାବେଶରେ ନୃତ୍ୟପ୍ରଦର୍ଶନ କରୁଥିବା ଅବସ୍ଥାରେ ମଧ୍ୟ କାଳୀଙ୍କୁ ଦେଖି ହସି ଦେଇଥିଲେ । ଏଥିରେ କ୍ରୁଦ୍ଧାହୋଇ କାଳୀ ଅଭିଶାପ ଦେଲେ ଯେ ରୂପ ଗର୍ବରେ ଗର୍ବିତ ହୋଇ ସ୍ୱର୍ଗର ପବିତ୍ରତାକୁ କଳୁଷିତ କରିବା ଅପରାଧରେ ସେମାନେ ମାନବଦେହ ଧାରଣ କରି ମର୍ତ୍ତ୍ୟରେ ଜନ୍ମହେବେ । ଅଭିଶାପ ବାଣୀ ଶ୍ରବଣ କରି ଗନ୍ଧର୍ବମାନେ ବ୍ୟଥିତ ହୋଇ ଶାପମୁକ୍ତି ପାଇଁ ପ୍ରାର୍ଥନା କଲେ । ତିଲୋତ୍ତମାଙ୍କ ପାଇଁ ବିଶେଷ ଭାବରେ ଇନ୍ଦ୍ରାଣୀ କାଳୀଙ୍କ ନିକଟରେ ପ୍ରାର୍ଥନା କରିବାରୁ କାଳୀ କହିଲେ ଯେ ଅଳ୍ପଦିନ ପାଇଁ ତିଲୋତ୍ତମା ମର୍ତ୍ତ୍ୟକୁ ଯିବେ । ତାଙ୍କ ପାଇଁ ଅଭିଶାପ

ଏହି ଗନ୍ଧର୍ବମାନେ ପ୍ରାଣହାର ମୁକ୍ତ ପାଇବେ ଓ ପରଶେଷରେ ଜୟନ୍ତ ଉଷାଙ୍କ ସହିତ ମିଳିତ ହୋଇ ମୁକ୍ତପାଇ ଆସିବେ । ହାତ ଧରାଧର ହୋଇ ନାଚୁଥିବା ଅବସ୍ଥାରେ ଦୁହେଁ ଅଭିଶାପ ପାଇଥିବାରୁ ପୁଣି ଯେତେବେଳେ ମର୍ତ୍ତ୍ୟରେ ଦୁହେଁ ହାତ ଧରାଧର ହେବେ, ସେତିକବେଳେ ମୁକ୍ତ ପାଇବେ । ଏହି ଉଷା ଓ ଜୟନ୍ତ ଯଥାକ୍ରମେ ତିଳୋତ୍ତମା ଓ ଚିତ୍ରରଥ । ସେମାନେ ମୁକ୍ତପାଇ ସ୍ୱର୍ଗକୁ ଚାଲିଯାଇ ଅଛନ୍ତି । କାଳୀଙ୍କଠାରୁ ଏହି ବୃତ୍ତାନ୍ତ ଶ୍ରବଣ କରିବା ପରେ ରାଜା ସେମାନଙ୍କର ଅନ୍ତ୍ୟେଷ୍ଟିକ୍ରିୟାର ବନ୍ଦୋବସ୍ତ କଲେ । ରାଜାଜ୍ଞାରେ ଉଷା ଓ ଜୟନ୍ତଙ୍କର ସମାଧି ସ୍ଥାନରେ ଗୋଟିଏ ମନୋରମ ମଣ୍ଡପ ନିର୍ମିତ ହେଲା । ନୁରୁପୁରର ଲୋକମାନେ ତାହାକୁ ଉଷାମଣ୍ଡପ ବା ଉଷାମେଢ଼ ବୋଲି କହୁଥାଆନ୍ତି ।

## ପାର୍ବତୀ—

ନୀଳାଚଳ କ୍ଷେତ୍ରରେ ଦୋଳଉତ୍ସବର ବର୍ଣ୍ଣନା ଦିଆଯାଇ କାବ୍ୟର କଥାବସ୍ତୁ ଆରମ୍ଭ କରାଯାଇଅଛି । ଆଡ଼ମ୍ବର ସହକାରେ ଦୋଳଉତ୍ସବ ପାଳିତ ହେଉଥିଲେ ହେଁ ଉତ୍କଳର ରାଜମହିଷୀ ପାର୍ବତୀଙ୍କ ମନରେ ଆନନ୍ଦର ବିମଳ ଉଚ୍ଛ୍ୱାସ ନାହିଁ । କାରଣ ଉତ୍କଳେଶ୍ୱର ଗଙ୍ଗେଶ୍ୱର ରାଜଧାନୀରେ ଉପସ୍ଥିତ ନ ଥିଲେ । ସେ ରତ୍ନପୁରଦୁର୍ଗ ଅବରୋଧ କରି ତାକୁ ଜୟ କରିବା ନିମନ୍ତେ ପାଞ୍ଚ ବର୍ଷ ହେବ ସେଠାରେ ଯୁଦ୍ଧରତ । ଯୁଦ୍ଧକୁ ଯିବା ସମୟରେ ରାଜା ନିଜ କନ୍ୟା ଅପୂର୍ବ ଶୋଭାମୟୀ କୌଶଲ୍ୟାଙ୍କୁ ନିଜ ସଙ୍ଗରେ ନେଇଥିଲେ । ରାଜା ସେଠାରୁ ସମ୍ବାଦ ପ୍ରେରଣ କରିଥିଲେ ଯେ କେମା ଚରିତ୍ରହୀନା ହୋଇ ଅନ୍ତଃସତ୍ତ୍ୱା ହେବାରୁ ତାଙ୍କୁ ବନ୍ଦିନୀ କରାଯାଇଥିଲା; ମାତ୍ର ସେ ବନ୍ଦୀଶାଳାରୁ କେଉଁ ଆଡ଼କୁ ପଳାୟନ

କରଅଛନ୍ତି । ଏ ସମ୍ବାଦ ପାଇ ରାଣୀଙ୍କ ମନ ଅତ୍ୟନ୍ତ ଦୁଃଖିତ ହେଲା । ରାଣୀ ହଠାତ୍ ଗରୁଡ଼ସ୍ତମ୍ଭ ନିକଟରେ ଅଧାପଢ଼ ଶୁଣିବାକୁ ପାଇଲେ ଯେ କୌଶଲ୍ୟା ହଠାତ୍ ଆସି ତାଙ୍କ ନିଜ କଥା ଶୁଣାଇବେ । ଏହା ଶୁଣିବା ପରେ ରାଣୀଙ୍କ ହୃଦୟରେ କନ୍ୟାଦର୍ଶନ ଆଶା ବଳବତ୍ତ ହୋଇ ଉଠିଲା ।

ଦୁଇ ବର୍ଷ ହେବ ବୃଦ୍ଧ କଞ୍ଚୁକୀ ଯୁଦ୍ଧଭୂମିରୁ ଫେରିଆସି ଦୁର୍ଗ ଉପରିସ୍ଥ ସର୍ବୋଚ୍ଚ ସ୍ଥାନରେ ରହି ଉତ୍ତରଦିଗକୁ ଲକ୍ଷ୍ୟ ରଖିଥାଆନ୍ତି । କାରଣ ରାଜାଙ୍କର ଜୟବାର୍ତ୍ତା ପର୍ବତକୁ ପର୍ବତ ଅନଳ ସଙ୍କେତ ଦ୍ୱାରା ଜଣାଇ ଦିଆଯିବ ଏବଂ ଏହି ସଙ୍କେତ ପାଇଲେ ରାଜଧାନୀରେ ବିଜୟବାର୍ତ୍ତା ପ୍ରଚାରିତ ହେବ । ଦୁଇ ବର୍ଷ କାଳ ବହୁପ୍ରକାର ଅଶୁଭ ସଙ୍କେତ ପ୍ରକାଶ ପାଇବା ପରେ ହଠାତ୍ ରାତିରେ କଞ୍ଚୁକୀ ଅଗ୍ନି ସଙ୍କେତରୁ ବିଜୟବାର୍ତ୍ତା ପାଇଲେ । ବିଜୟବାର୍ତ୍ତା ପାଇ ପ୍ରାସାଦ ଉପରୁ ଓହ୍ଲାଇବା ସମୟରେ କଞ୍ଚୁକୀ ହଠାତ୍ ଉଦ୍ୟାନ ମଧ୍ୟରେ ଏକ ଅଶରୀରୀ ନାରୀମୂର୍ତ୍ତି ଦେଖିବାକୁ ପାଇ ଭୀତ ହେଲେ ଓ ରାଣୀଙ୍କ ପାଖରେ ଉଭୟବାର୍ତ୍ତା ପ୍ରକାଶ କଲେ । ଦୋଳଉତ୍ସବ ସହିତ ବିଜୟ-ଉତ୍ସବ ରାଜଧାନୀରେ ମହା ଆଡ଼ମ୍ବର ସହକାରେ ପାଳିତହେଲା । ମାତ୍ର ରାଣୀଙ୍କ ମନରେ ଏହି ଉତ୍ସବ କୌଣସି ପ୍ରଭାବ ପକାଇ ପାରିଲା ନାହିଁ । ରାଣୀ ରାତି ସମୟରେ ସାବଧାନ ସହକାରେ ପୁର-ଉଦ୍ୟାନକୁ ନିରୀକ୍ଷଣ କଲେ ଓ କୌଶଲ୍ୟାଙ୍କର ଛାୟାମୂର୍ତ୍ତି ଦେଖିବାକୁ ପାଇଲେ । କୌଶଲ୍ୟା ମାତାଙ୍କ ନିକଟରେ ନିଜର ବୃତ୍ତାନ୍ତ ବର୍ଣ୍ଣନା କଲେ । ପିତାଙ୍କ ପ୍ରେରିତ ସମ୍ବାଦ ସମ୍ପୂର୍ଣ୍ଣ ମିଥ୍ୟା ।

ରାଜା କୌଶଲ୍ୟାଙ୍କୁ ଯୁଦ୍ଧକ୍ଷେତ୍ରକୁ ନେଇ ତାଙ୍କ ଅଧୀନସ୍ଥ ରାଜକୁମାରମାନଙ୍କୁ ଦେଖାଇ କହିଲେ ଯେ ଯେଉଁ ଯୁବକ ରଣସ୍ଥଳ

ଦୁର୍ଗରେ ଉତ୍କଳର ବିଜୟ ପତାକା ଉଡ଼ାଇ ପାରିବ, ସେହି ଏକା କୌଶଲ୍ୟାଙ୍କର ପାଣିଗ୍ରହଣ କରିବ । କୌଶଲ୍ୟାଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ବୀର ଯୁବକମାନେ ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳାଇଲେ । ମାନ ରାଜାଙ୍କ କ୍ରିୟାକଳାପ ହଠାତ୍ ଅନ୍ୟରୂପ ଧାରଣ କଲା । ଦିନେ କୌଶଲ୍ୟା ନିଦ୍ରା ଯାଇଥିବା ସମୟରେ ରାଜା କୌଶଲ୍ୟାଙ୍କ ଶଯ୍ୟାରେ ତାଙ୍କୁ ଆକ୍ରମଣ କଲେ । କୌଶଲ୍ୟା ଶଯ୍ୟାରୁ ଡେଇଁ ପଡ଼ିଲେ; ମାନ ରାଜା ତାଙ୍କ ହାତଧରି ବହୁତ ଅନୁନୟ ବାଣୀ ପ୍ରକାଶ କଲେ । ନିଜ କନ୍ୟା ପ୍ରତି ଏ ପ୍ରକାର ପାପାଶା ଦେଖି କୌଶଲ୍ୟା ବ୍ୟଥିତା ହେଲେ; ମାନ ରାଜା ପ୍ରତିଦିନ ତାଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲେ । କୌଶଲ୍ୟାଙ୍କୁ ରାଜା ବନ୍ଦିନୀ କରି ରଖିଲେ ଓ ପ୍ରତିଦିନ ଆସି ନିଜର ପାପାଶା ଚରିତାର୍ଥ କରିବା ଫଳରେ କୌଶଲ୍ୟା ଅନ୍ତଃସତ୍ତ୍ୱା ହେଲେ । ରାଜା ମିଥ୍ୟାପ୍ରଚାର କଲେ ଯେ କେମା ଚରିତ୍ରହୀନା ହୋଇ ଅନ୍ତଃସତ୍ତ୍ୱା ହୋଇଥିବାରୁ ତାଙ୍କୁ ବନ୍ଦିନୀ କରାଯାଇଅଛି । ତା ପରେ କୌଶଲ୍ୟାଙ୍କ ଗର୍ଭରୁ ଏକ ପୁତ୍ରସନ୍ତାନ ଜନ୍ମହେଲା ଏବଂ ରାଜା କୌଶଲ୍ୟାଙ୍କୁ ପୁତ୍ର ସହିତ ଧଉଳି ପାହାଡ଼କୁ ପଠାଇ ଦେଲେ । ଧଉଳି ପାହାଡ଼ର ଅରଣ୍ୟକୁ ଗୋପନରେ ସୈନ୍ୟମାନେ ତାଙ୍କୁ ନେବା ସମୟରେ ତାଙ୍କୁ ଏକ ଜଳପୂର୍ଣ୍ଣ କଳସୀ କାଖରେ ବହନ କରିବାକୁ ପଡ଼ିଥିଲା; କାରଣ ଜଳ ଯେଉଁ ପରିମିତ ଭୂମିରେ ପଡ଼ିବ ସେହି ଭୂମିରେ ବାମ୍ଫୀ ଖୋଳି ପାପର ପ୍ରାୟଶ୍ଚିତ୍ତ କରିବାକୁ ହେବ ବୋଲି ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା । ସୈନ୍ୟମାନେ ତାଙ୍କୁ ନେଇ ସେହି ଅରଣ୍ୟ ମଧ୍ୟରେ କଣ୍ଟା ଦିଆଯାଇଥିବା ଏକ ଶୁଖିଲା କୂପ ମଧ୍ୟରେ ପକାଇ-ଦେଇ କୂପର ମୁହଁ ବନ୍ଦ କରିଦେଲେ । ସେହି କୂପରେ କୌଶଲ୍ୟାଙ୍କର ସନ୍ତାନ ପ୍ରାଣ ହରାଇଲା ଓ କୌଶଲ୍ୟା କ୍ଷୁଧାରେ

ଆତୁର ହୋଇ ଜୀବନ ବିକଳରେ ମୃତଶିଶୁର ପଚ୍ଚମାଂସ ଅଣ୍ଡାଳି ଖାଇଥିଲେ । ତା ପରେ ସେଠାରେ ତାଙ୍କର ମଧ ପ୍ରାଣବାୟୁ ଉଡ଼ିଗଲା ।

ଏହି ଦୁଃଖର କାହାଣୀ ଶୁଣାଇବା ପରେ କୌଶଲ୍ୟାଙ୍କର ପ୍ରେତାତ୍ମା ସେଠାରୁ ଚାଲିଗଲା । ରାଣୀ ଏ ପ୍ରକାର ଅଶ୍ରୁତପୂର୍ବ ଘଟଣା ଶୁଣି ବ୍ୟଥିତା ହେବା ସଙ୍ଗେ ସଙ୍ଗେ ଏ ଅନ୍ୟାୟର ନିରାକରଣ ପାଇଁ ଦେବଦେବୀଙ୍କୁ ଡାକିଲେ । ନିଜର କ୍ରୋଧକୁ ଚାପିରଖି ଧୀରେ ଧୀରେ ଅନ୍ତଃପୁରକୁ ଗଲେ ।

ରତ୍ନପୁର ବିଜୟ ପରେ ରାଜା ଗଙ୍ଗେଶ୍ୱର ରାଜଧାନୀକୁ ଫେରିବା ଦିନ ରାଜଧାନୀରେ ଉତ୍ସବର କୋଳାହଳ ବ୍ୟାପି ଯାଇଥିଲା । ରତ୍ନପୁର ରାଜଜେମା ଶିବିକାରୁ ଅବତରଣ କରି ରାଣୀଙ୍କ ପାଦପାଖରେ ପଡ଼ି ନିଜର ଅସହାୟତା ପାଇଁ ପ୍ରାର୍ଥନା କଲେ । ରାଣୀ ତାଙ୍କୁ ସାଦରେ ଗ୍ରହଣ କରି ନିଜ ଅନ୍ତଃପୁରକୁ ନେଲେ । ସେଠାରେ ରାଣୀ ରତ୍ନପୁର ଜେମାଙ୍କୁ ଯୁଦ୍ଧର ବିବରଣୀ ପଚାରିଲେ । ଯୁଦ୍ଧର କାରଣ ସହିତ ରତ୍ନପୁର ଜେମା ଅନ୍ନପୂର୍ଣ୍ଣା ନିଜର ବୃତ୍ତାନ୍ତ ବର୍ଣ୍ଣନା କଲେ । ସେ ବାଲ୍ୟକାଳରୁ ମାତୃହୀନା ହେଲେ ହେଁ ପିତାଙ୍କ ସ୍ନେହରେ ପାଳିତା । ତାଙ୍କର ଯୌବନାବସ୍ଥାରେ ରାଜା ସ୍ୱୟମ୍ବରର ଆୟୋଜନ କରିଥିଲେ । ଗଙ୍ଗେଶ୍ୱର ସେତେବେଳେ ଦାସପୁର ଦୁର୍ଗ ଅବରୋଧ କରୁଥିଲେ । ତାଙ୍କ ସହିତ ରାଜକୁମାର ଏକଜାତ ଥିବାରୁ ରତ୍ନପୁର ରାଜା ସ୍ୱୟମ୍ବର ପାଇଁ ନିମନ୍ତ୍ରଣ ପଠାଇଲେ । ମାତ୍ର ଗଙ୍ଗେଶ୍ୱର ନିଜେ ରତ୍ନପୁର ଜେମାଙ୍କୁ ବିବାହ କରିବା ପାଇଁ ଇଚ୍ଛାପ୍ରକାଶ କରି ସମ୍ବାଦ ପ୍ରେରଣ କଲେ । ରତ୍ନପୁରର ରାଜା ଏଥିରେ ଅସମ୍ମତ ହେବାରୁ ଗଙ୍ଗେଶ୍ୱର

ରତ୍ନପୁର ଆକ୍ରମଣ କଲେ ଓ ପାଞ୍ଚ ବର୍ଷ ଧରି ଯୁଦ୍ଧ ଚାଲିବା ପରେ ରତ୍ନପୁରର ପତନ ହେଲା । ଏହି ଯୁଦ୍ଧରେ ରତ୍ନପୁରର ରାଜା ମୃତ୍ୟୁବରଣ କଲେ । ରତ୍ନପୁରର ସୈନ୍ୟମାନେ ବୀରତ୍ୱର ସହକାରେ ଯୁଦ୍ଧକରି ପ୍ରାଣପାତ କଲେ ।

ଏହି କାବ୍ୟଟି ଏତିକରେ ସମାପ୍ତି ଲାଭ କରିଅଛି । ପ୍ରକୃତ ପକ୍ଷରେ କାବ୍ୟର କଥାବସ୍ତୁର ପରିସମାପ୍ତି ହୋଇନାହିଁ । ନାନା କାରଣବଶତଃ ରାଧାନାଥ ପାର୍ବତୀ କାବ୍ୟକୁ ଅସଂପୂର୍ଣ୍ଣ ଅବସ୍ଥାରେ ଛାଡ଼ି ଦେଇ ଚିଲିକା କାବ୍ୟ ରଚନାରେ ବ୍ରତୀ ହୋଇଥିଲେ । ତେଣୁ ରାଧାନାଥଙ୍କର ପାର୍ବତୀ କାବ୍ୟ ଅସଂପୂର୍ଣ୍ଣ ।

**ଚିଲିକା—**

ଜାତୀୟବାଦୀ ରାଧାନାଥଙ୍କର ପ୍ରକୃଷ୍ଟ ପରିଚୟ ଦେଉଛି ଚିଲିକା କାବ୍ୟ । ଏହି କାବ୍ୟରେ କବି ନିଜର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଅଛନ୍ତି । ଏହି କାବ୍ୟରେ କବି ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ସଂଗେ ସଂଗେ ଚିଲିକାକୁ ସମଗ୍ର ଭାରତବର୍ଷରେ ଶ୍ରେଷ୍ଠତମ ପ୍ରାକୃତିକ ସୌନ୍ଦର୍ଯ୍ୟର ଆଧାର ରୂପେ ବର୍ଣ୍ଣନା କରିଅଛନ୍ତି । କବି ଭାରତବର୍ଷର ବିଭିନ୍ନ ପ୍ରାକୃତିକ ଦୃଶ୍ୟପୂର୍ଣ୍ଣ ସ୍ଥାନ ଭ୍ରମଣ କରି ସେସବୁ ସ୍ଥାନର ସୌନ୍ଦର୍ଯ୍ୟ ସହିତ ଚିଲିକାର ସୌନ୍ଦର୍ଯ୍ୟକୁ ତୁଳନା କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି । ଚିଲିକାର ପ୍ରକୃତି କବିଙ୍କ ଚକ୍ଷୁରେ ଅତୁଳନୀୟ ରୂପରେ ପ୍ରତିଭାତ ହୋଇଅଛି । କାବ୍ୟର ପ୍ରସଙ୍ଗ ମଧ୍ୟରେ କବି ଉତ୍କଳର ଦୁଇ ଗୋଟି ଐତିହାସିକ ଘଟଣାକୁ ବର୍ଣ୍ଣନା କରିଅଛନ୍ତି । ପୁରୁଷୋତ୍ତମ ଦେବଙ୍କର କାଞ୍ଚି ବିଜୟ ପରେ ପ୍ରତ୍ୟାବର୍ତ୍ତନ ଓ ରକ୍ତବାହୁର ଉତ୍କଳ ଆକ୍ରମଣ

ପରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କାଳର ଦୁଇଗୋଟି ବର୍ଣ୍ଣନାରେ ଚିଲିକାର ମହତ୍ତ୍ୱ ସୂଚିତ ହୋଇଅଛି । କବି ଉତ୍କଳର ଦୁର୍ଦ୍ଦଶା ଲାଗି ଦୁଃଖପ୍ରକାଶ କରିଅଛନ୍ତି । ଉତ୍କଳରେ ପ୍ରାକୃତିକ ଦୃଶ୍ୟସମ୍ଭାର ପରିପୂର୍ଣ୍ଣ ଥିଲେ ହେଁ କବିମାନଙ୍କର ବର୍ଣ୍ଣନାର ଅଭାବରୁ ଉତ୍କଳ ଭାରତବର୍ଷରେ ତାର ସମୁଚିତ ଆସନ ପାଇବାରୁ ବଞ୍ଚିତ ହୋଇଅଛି । କବି ନିଜର ଜୀବନର ତିକ୍ତ ଅନୁଭୂତି ପ୍ରକାଶ କରିବା ସଙ୍ଗେ ସଙ୍ଗେ ମାନବ ସମାଜକୁ ଶିକ୍ଷାପୂର୍ଣ୍ଣ ଉପଦେଶ ପ୍ରଦାନ କରିଅଛନ୍ତି । କବି ଉତ୍କଳର ଦୁର୍ଦ୍ଦଶାରେ ଦୁଃଖପ୍ରକାଶ କରିବା ସଙ୍ଗେ ସଙ୍ଗେ ଉତ୍କଳର ଭବିଷ୍ୟତ ଉନ୍ନତିର ଆଶାରେ ଆଶାୟୀ ହୋଇଅଛନ୍ତି । ଚିଲିକାକାବ୍ୟ ଉତ୍କଳର ପ୍ରାଧାନ୍ୟ ପ୍ରଚାର କରିବା ସଙ୍ଗେ ସଙ୍ଗେ ରାଧାନାଥଙ୍କର ଜାତୀୟତାବାଦୀ ଦୃଷ୍ଟିକୋଣର ପ୍ରକୃଷ୍ଟ ପରିଚୟ ପ୍ରଦାନ କରିଅଛି । ନିଜର ଦେଶ ଓ ମାତୃଭାଷାର ଉନ୍ନତି ପାଇଁ କବିଙ୍କର ଆନ୍ତରିକ କାମନା ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା ।

## ମହାଯାତ୍ରା—

ମହାଯାତ୍ରା ଅସମାପ୍ତ ହେଲେ ହେଁ ଏହା ଆଧୁନିକ ଓଡ଼ିଆ ସାହିତ୍ୟର ଏକମାତ୍ର ମହାକାବ୍ୟ । ଏହାର ସାତଗୋଟି ମାତ୍ର ସର୍ଗ ଲିଖିତ ଓ ପ୍ରକାଶିତ । ପ୍ରଥମ ସର୍ଗରେ କବି ଆଶୀନମସ୍କ୍ରିୟା ସମ୍ପାଦନ କରି ବିଷୟବସ୍ତୁର ଆରମ୍ଭ କରିଛନ୍ତି । ଯଦୁବଂଶ ଧ୍ୱଂସ ପରେ ଶ୍ରୀକୃଷ୍ଣଙ୍କର ଇହଲୀଳାସମ୍ବରଣ ବାର୍ତ୍ତା ଶ୍ରବଣ କରି ଯୁଧିଷ୍ଠିର ରାଜ୍ୟତ୍ୟାଗ କରିବାର ବାସନା ପ୍ରକାଶକଲେ । ଯୁଧିଷ୍ଠିରଙ୍କର ବନ ଗମନ କଥାଶୁଣି ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ ଓ ଦ୍ରୌପଦୀ ତାଙ୍କ ସହିତ ଗମନ କରିବା ପାଇଁ ପ୍ରାର୍ଥନା କଲେ ।

ଯୁଧିଷ୍ଠିର ତାଙ୍କର ଗୃହଭାଇ ଓ ଦ୍ରୌପଦୀଙ୍କୁ ସଙ୍ଗରେ ନେବା ପାଇଁ ଅନୁମତି ପ୍ରଦାନ କଲେ । ବିଧି ଅନୁସାରେ ପରୀକ୍ଷିତଙ୍କୁ ସିଂହାସନରେ ବସାଇ ପାଣ୍ଡବ ଓ ଦ୍ରୌପଦୀ ରାଜ୍ୟତ୍ୟାଗ କଲେ ।

ଦ୍ୱିତୀୟ ସର୍ଗରେ ପାଣ୍ଡବମାନଙ୍କର ତୀର୍ଥାଟନର ବର୍ଣ୍ଣନା ପ୍ରସଙ୍ଗରେ କବି ଭାରତର ବିଭିନ୍ନ ତୀର୍ଥର ପ୍ରାଧାନ୍ୟ ସୂଚିତ କରି-ଅଛନ୍ତି । ପାଣ୍ଡବମାନେ ହସ୍ତିନାରୁ ବାହାରି ମଥୁରା, ପ୍ରୟାଗ, କାଶୀ, ଅଯୋଧ୍ୟା, ନୈମିଷାରଣ୍ୟ, ଗୟା, ରାଜଗିରି, କାଳଘାଟ, ଆସାମ ପ୍ରଭୃତି ତୀର୍ଥମାନଙ୍କରେ ଭ୍ରମଣ କରି ବ୍ରହ୍ମପୁତ୍ର ନିକଟରେ ଉପସ୍ଥିତ ହେଲେ । ତାପରେ କପିଳାଶ୍ରମ ଓ ତାମ୍ରଲିପ୍ତି ଅତିକ୍ରମ କରି ପାଣ୍ଡବମାନେ ନୀଳାଚଳ କ୍ଷେତ୍ରରେ ପ୍ରବେଶ କରି ଅଛନ୍ତି । ଏହିଠାରେ ମହୋଦଧିର ଜଳଭେଦ କରି ଅଗ୍ନିଦେବଙ୍କର ଆବିର୍ଭାବ ସେମାନେ ଦେଖିଲେ । ଅଗ୍ନିଦେବ ଅର୍ଜ୍ଜୁନଙ୍କୁ ନିଜର ପରିଚୟ ଦେଇ ଗାଣ୍ଡୀବ ଧନୁ ଓ ଅକ୍ଷୟ ତୂଣଯୁଗ୍ମ ଜଳରେ ନିକ୍ଷେପ କରିବାକୁ ଅନୁରୋଧ କଲେ । ତାପରେ ଅଗ୍ନିଦେବ ପାଣ୍ଡବମାନଙ୍କ ସମକ୍ଷରେ ଚନ୍ଦ୍ରତୀର୍ଥର ଉତ୍ପତ୍ତି ଓ ମାହାତ୍ମ୍ୟ ବିଷୟ ବର୍ଣ୍ଣନା କଲେ । ଏଥିରେ ଉତ୍କଳର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ କବି ନିଜର ଦେଶପ୍ରାଣତାର ପରିଚୟ ପ୍ରଦାନ କରିଛନ୍ତି । ଚନ୍ଦ୍ରତୀର୍ଥରେ ପାଣ୍ଡବମାନେ ଅଗ୍ନିଦେବଙ୍କ ସହିତ ଏକଦିନ ଓ ରାତ୍ରି ଯାପନ କରି ପରଦିନ ପ୍ରତ୍ୟୁଷରେ ମହେନ୍ଦ୍ରକାନ୍ତାର ପଥରେ ଅଗ୍ରସର ହେଲେ ।

ତୃତୀୟ ସର୍ଗରେ ପାଣ୍ଡବମାନେ ଅଗ୍ନିଦେବଙ୍କ ସହିତ ଉତ୍କଳର ପାର୍ବତ୍ୟ ଅଞ୍ଚଳରେ ପ୍ରବେଶ କଲେ । ଅଗ୍ନିଦେବ ପାଣ୍ଡବମାନଙ୍କୁ ଉତ୍କଳର ଅରଣ୍ୟ-ପ୍ରକୃତିର ବୈଚିତ୍ର୍ୟ ପ୍ରଦର୍ଶନ କରି ବିଭିନ୍ନ ସ୍ଥାନଗୁଡ଼ିକର ମାହାତ୍ମ୍ୟ ବୁଝାଇ ଦେଲେ । ଏହି

ଅବସରରେ କବିଙ୍କ ଲେଖନୀରେ ଉତ୍କଳର ଭୀମକାନ୍ତ ପ୍ରକୃତି ଅତୀବ ସ୍ପଷ୍ଟ ରୂପରେ ପ୍ରକାଶିତ ହୋଇଅଛି । ଏହି ପ୍ରସଙ୍ଗରେ ମେଘାସନ, ଗୋନାସା, ମାଲ୍ୟଗିରି, ମୈନାକ, କପିଳାସ ଓ ପଞ୍ଚଧାର ପ୍ରଭୃତି ଉତ୍କଳର ବିଶିଷ୍ଟ ଶିଖରମାନଙ୍କର ବର୍ଣ୍ଣନା ଦିଆଯାଇଅଛି । ପାଣ୍ଡବମାନେ ସାତକୋଶିଆରୁ ବିଦାୟ ନେଇ ପଶ୍ଚିମ ଦିଗକୁ ଅଗ୍ରସର ହେଲେ । ପଥମଧ୍ୟରେ ଭୀଷଣ ଅରଣ୍ୟ ପ୍ରକୃତିର ଦୃଶ୍ୟ ଦେଖି ଦେଖି ପାଣ୍ଡବମାନେ ମଧ୍ୟଦେଶର ମାଳ-ଭୂମିରେ ପହଞ୍ଚିଲେ । ସେ ସ୍ଥାନରେ ଥିବା ବିଭିନ୍ନ ଋଷି ଆଶ୍ରମ ସେମାନେ ପରିଦର୍ଶନ କଲେ । ତାପରେ ସେମାନେ ଇନ୍ଦ୍ରାଦ୍ରି ( ଆଧୁନିକ ସାତପୁରା ) ଅତିକ୍ରମ କରି ତାପ୍ତୀନଦୀ ତୀରରେ ପହଞ୍ଚିଲେ । ଅଗ୍ନିଦେବ ସହ୍ୟାଦ୍ରି ( ଆଧୁନିକ ପଶ୍ଚିମଘାଟ ପର୍ବତମାଳା ) ବିଷୟରେ ବର୍ଣ୍ଣନା କରିବା ପ୍ରସଙ୍ଗରେ କଳି ଆଗମନ ବିଷୟ ପ୍ରକାଶ କରି ଏହି ଦୃଶ୍ୟ ଦେଖାଇବା ପାଇଁ ପାଣ୍ଡବମାନଙ୍କୁ ସହ୍ୟାଦ୍ରି ଶିଖରକୁ ନେଇଗଲେ ।

ଚତୁର୍ଥ ସର୍ଗରେ ବର୍ଣ୍ଣିତ ହୋଇଅଛି ଯେ ଯୁଧିଷ୍ଠିର ସହ୍ୟାଦ୍ରି ଶିଖରରେ ବସି ଅପୂର୍ବ ଦେବସଭା ସନ୍ଦର୍ଶନ କଲେ । ଏହି ଦେବସଭାରେ ଧର୍ମ, ସାହସ, ସତ୍ୟ, ନ୍ୟାୟ, ତପଃ, କ୍ଷମା, ଦୟା, ଶୌଚ, ତିତିକ୍ଷା, ଆର୍ଜବ, ପ୍ରଭୃତି ବିଗ୍ରହରୂପରେ ଉପସ୍ଥିତ । ପୁଣି ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟର ଅଧିଦେବୀ ଲକ୍ଷ୍ମୀ ଓ ବିଦ୍ୟାଦାୟିନୀ ସରସ୍ୱତୀ ମଧ୍ୟ ଏହି ସଭାରେ ଆସନ ଅଳଂକୃତ କରି ଅଛନ୍ତି । ଦେବଦେବୀଙ୍କ ବର୍ଣ୍ଣନା କବିଙ୍କ କଳ୍ପନାର ପରାକାଷ୍ଠା ପ୍ରଦର୍ଶନ କରିଅଛି । କଳିର ଆଗମନରେ ଏହି ଦେବଦେବୀମାନେ କେଉଁ ସ୍ଥାନରେ ଆଶ୍ରୟ ନେବେ ବୋଲି ମନ୍ତ୍ରଣା କରିବା ସମୟରେ କଳିର ଆଗମନ ପ୍ରଦର୍ଶିତ ।

କଳି ତାର ଦଳବଳ ସହ ପ୍ରବେଶ କରିଅଛି । କଳିର ପକ୍ଷରେ କାମ, କ୍ରୋଧ, ଲୋଭ, ମୋହ, ମଦ, ଈର୍ଷା, ମିଥ୍ୟା, ଶାଠ୍ୟ, କଳହ ଓ ଆଳସ୍ୟ ଯଥାକ୍ରମେ ନିଜ ନିଜର ବିଶେଷତ୍ୱ ପ୍ରଦର୍ଶନ କରି ଭାରତର ଧର୍ମ ଓ ସଦ୍‌ଗୁଣଗୁଡ଼ିକୁ ଆକ୍ରମଣ କଲେ । କବିବର ରାଧାନାଥ ନିଜର ଅପୂର୍ବ ବର୍ଣ୍ଣନା କୌଶଳ ଯୋଗୁଁ ଏହି ସର୍ଗଟିକୁ ଏକ ଜୀବନ୍ତ ପରିଗ୍ରହ ପ୍ରଦାନ କରି ଅଛନ୍ତି । ଏଥିପାଇଁ ତାଙ୍କ ଉପରେ ଇଂରାଜୀ ଓ ସଂସ୍କୃତ ସାହିତ୍ୟର ପ୍ରଭାବ ପଡ଼ିଅଛି ସତ, ମାତ୍ର ସେ ଇଂରେଜୀ ବା ସଂସ୍କୃତ ସାହିତ୍ୟର ବର୍ଣ୍ଣନାକୁ ଅନ୍ଧଭାବରେ ଅନୁସରଣ କରି ନାହାନ୍ତି । ସେ ନିଜର ପାଣ୍ଡିତ୍ୟବଳରେ ଯଥୋଚିତ ବର୍ଣ୍ଣନାଦେଇ ନିଜର ଔଚିତ୍ୟ ଜ୍ଞାନର ପରିଚୟ ପ୍ରଦାନ କରିଅଛନ୍ତି ।

ପଞ୍ଚମ ସର୍ଗର ଆରମ୍ଭରେ କବି ମୟୂରଭଞ୍ଜାଧୀଶ ରାମଚନ୍ଦ୍ର ଭଞ୍ଜଙ୍କ ଗୁଣାବଳୀ ବର୍ଣ୍ଣନା କରି ଅଛନ୍ତି । ମହାକାବ୍ୟରେ ପ୍ରସଙ୍ଗ ମଧ୍ୟରେ ଏ ପ୍ରକାର ରାଜ ପ୍ରଶସ୍ତି ଗାନ ଦୋଷାବହ ବୋଲି ଆଲଙ୍କାରିକମାନେ ମତପ୍ରଦାନ କରି ଅଛନ୍ତି । ଚତୁର୍ଥ ସର୍ଗରେ କବି ସୂଚନା ଦେଇ ଅଛନ୍ତି ଯେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ପତନ ହେଲେ ଭାରତର ପତନ ସୁନିଶ୍ଚିତ । ଏହି ସର୍ଗରେ କବି ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ପତନ ବିଷୟ ବର୍ଣ୍ଣନା କରି ଅଛନ୍ତି । କାବ୍ୟରେ ପୌରାଣିକ ବିଷୟବସ୍ତୁର ବିନ୍ୟାସ ପରିବର୍ତ୍ତେ ଏଠାରେ ଐତିହାସିକ ବିଷୟବସ୍ତୁର ସୂଚନା ଦିଆଯାଇଅଛି । ଭାରତର ପତନ ପରେ ଭାରତର ଦୁରବସ୍ଥାକୁ ଦୂର କରିବା ନିମନ୍ତେ ବୁଦ୍ଧଦେବଙ୍କର ଜନ୍ମ ଓ କାର୍ଯ୍ୟ ସମ୍ବନ୍ଧରେ ଅଗ୍ନିଦେବ ସୂଚନା ପ୍ରଦାନ କରି ଅଛନ୍ତି । ବୌଦ୍ଧଧର୍ମ ଭାରତରେ ପ୍ରଚରିତ ହୋଇ ଅଶୋକଙ୍କ

ଦ୍ୱାରା ପ୍ରତିଷ୍ଠିତ ହେବ । ମାତ୍ର ଅଳ୍ପକାଳ ପରେ ଏ ଧର୍ମର ପ୍ରଭାବ ଦୂରୀଭୂତ ହେବ ଏବଂ ହିନ୍ଦୁମାନେ ପରସ୍ପର କଳହରେ ବ୍ୟାପୃତ ହୋଇ ନିଜର ସ୍ୱାଧୀନତା ହରାଇ ବସିବେ । ଫଳରେ ଯବନମାନେ ଭାରତକୁ ଅଧିକାର କରିବେ ।

ଷଷ୍ଠ ସର୍ଗର ଆରମ୍ଭରେ ବାମଣ୍ଡାଧୀଶ ସୁଢ଼ଳ ଦେବଙ୍କର ପ୍ରଶସ୍ତି ଗାନ କରାଯାଇଅଛି । ତାପରେ ଅନଳଦେବଙ୍କ ଇଚ୍ଛା ଅନୁସାରେ ସ୍ୱାହାଦେବୀ ସହ୍ୟଗିରି ନିକଟରେ ଆବିର୍ଭୂତା ହୋଇ ହବ୍ୟ ଆଜ୍ୟପାତ୍ର ପ୍ରଦାନ କଲେ । ଅଗ୍ନିଦେବ ସେଥିରେ ହବ୍ୟାଞ୍ଜନ ପ୍ରସ୍ତୁତ କରି ଯୁଧିଷ୍ଠିରଙ୍କ ଚକ୍ଷୁରେ ଲଗାଇଦେଲେ । ଏହି ଅଞ୍ଜନ ବଳରେ ଯୁଧିଷ୍ଠିର ଭବିଷ୍ୟତରେ ଭାରତରେ କଣ ଘଟିବ ତାହା ଦେଖିବାକୁ ପାଇଲେ । ଯୁଧିଷ୍ଠିର ଦିଲ୍ଲୀନଗରୀର ଦୃଶ୍ୟ ସହିତ ଦ୍ୱିକ୍ଷିପୁ ତରେଜୀ ଯୁଦ୍ଧ ନିମିତ୍ତ ସୈନ୍ୟ ସମାଗମ ଦେଖି ପାରିଲେ । ଭାରତର ପତନ ନିମିତ୍ତ ଜୟଚନ୍ଦ୍ର ଓ ପୃଥ୍ୱୀରାଜଙ୍କ ବିବାଦ ବିଷୟରେ ବର୍ଣ୍ଣନା କରାଯାଇଅଛି । ଏହିଠାରୁ ଆରମ୍ଭ କରି ସପ୍ତମ ସର୍ଗର ଶେଷ ପର୍ଯ୍ୟନ୍ତ କବି ଐତିହାସିକ ଘଟଣା ଉପରେ ନିର୍ଭର କରି ଅଛନ୍ତି । ଦ୍ୱିକ୍ଷିପୁ ତରେଜୀ ଯୁଦ୍ଧ ପାଇଁ ସୈନ୍ୟ ସମାଗମର ବର୍ଣ୍ଣନା କରି କବି ଷଷ୍ଠସର୍ଗର ବର୍ଣ୍ଣନା ସମାପ୍ତ କରି ଅଛନ୍ତି ।

ସପ୍ତମ ସର୍ଗରେ କବି ମନ୍ତ୍ରଣା, ପ୍ରୟାଣ ଓ ସମରର କ୍ରମିକ ବର୍ଣ୍ଣନା କରିଅଛନ୍ତି । ବିଭିନ୍ନ ପ୍ରଦେଶରୁ ଆସିଥିବା ସୈନ୍ୟମାନଙ୍କର ସମାଗମ ସମ୍ବାଦ ପାଇ ପୃଥ୍ୱୀରାଜ ଯୁଦ୍ଧକୁ ବାହାରିଲେ । ପୃଥ୍ୱୀରାଜଙ୍କ ସହିତ ଅମର୍ଷୀ ଓ ତାଙ୍କ ପଛରେ ସଂଯୁକ୍ତା ଅଶ୍ୱାରୋହଣ କରି ଯୁଦ୍ଧ କ୍ଷେତ୍ରକୁ ଯିବାର ବର୍ଣ୍ଣନାରେ କବିଙ୍କର ପାରଦର୍ଶିତା ପରିଲକ୍ଷିତ

ହୋଇଅଛି । ପୃଥ୍ୱୀରାଜ ଦୂରାଗତ ସୈନ୍ୟମାନଙ୍କୁ ସାଦର ସମ୍ଭାଷଣ ଜଣାଇ ଯୁଦ୍ଧ ନିମନ୍ତେ ମନ୍ତ୍ରଣା କରିବାରୁ ସେନାପତିମାନେ ଯୁଦ୍ଧ ନକରି ସନ୍ଧି କରିବା ପ୍ରସ୍ତାବ ଦେଲେ । ଏଥିରେ ପୃଥ୍ୱୀରାଜ ଅତ୍ୟନ୍ତ ବିଷଣ୍ଣ ହେଲେ । ତେଣୁ ଅମର୍ଷୀ ସୈନ୍ୟମାନଙ୍କୁ ଉଦ୍‌ବୋଧନ ବାଣୀ ଶୁଣାଇଲେ । ଫଳରେ ଅମର୍ଷୀଙ୍କୁ ପ୍ରଧାନ ସେନାପତି ରୂପେ ବରଣ କରି ସୈନ୍ୟମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଅମର୍ଷୀଙ୍କ ମୁଖରେ କବି ଯେଉଁ ଉଦ୍‌ବୋଧନ ବାଣୀ ପ୍ରକାଶ କରିଅଛନ୍ତି ତାହା କବିବର ରାଧାନାଥଙ୍କର ଗଭୀର ଦେଶପ୍ରେମର ପରିଚୟ ପ୍ରଦାନ କରିଅଛି । ସୈନ୍ୟମାନେ ଅମର୍ଷୀଙ୍କୁ ପ୍ରଧାନ ସେନାପତି ରୂପେ ବରଣ କରିବାରୁ ପୃଥ୍ୱୀରାଜ ତାଙ୍କୁ ଅଭିଷିକ୍ତ କଲେ ଏବଂ ଦିଲ୍ଲୀର ପାଟରାଣୀ ସଂଯୁକ୍ତା ତାଙ୍କର ନୀରାଜନା ବିଧି ସମାପ୍ତ କଲେ । ତାପରେ ଯୋଦ୍ଧାମାନେ ଯୁଦ୍ଧକ୍ଷେତ୍ରକୁ ଅଗ୍ରସର ହେଲେ । ଯୁଦ୍ଧକ୍ଷେତ୍ର ନାନାପ୍ରକାର ବାଦ୍ୟରୋଳରେ ପ୍ରକମ୍ପିତ ହୋଇ ଉଠିଲା ଓ ତତ୍‌ସହିତ ଆର୍ଯ୍ୟ ଏବଂ ଯବନପକ୍ଷୀୟ ସୈନ୍ୟମାନେ ପରସ୍ପର ପ୍ରତି ଆକ୍ରମଣ କଲେ । ଭୀଷଣ ଯୁଦ୍ଧରେ ଭାରତୀୟମାନଙ୍କର ଗୌରବ-ରବି ଅସ୍ତମିତ ହେଲା । ଏହି ଯୁଦ୍ଧର ପରିସମାପ୍ତି ସହିତ ଯୁଧିଷ୍ଠିରଙ୍କ ଚକ୍ଷୁ ସମକ୍ଷରୁ ସମସ୍ତ ଦୃଶ୍ୟ ହଠାତ୍ ଅନ୍ତର୍ହିତ ହେଲା ।

ଏହିଠାରେ ହିଁ ମହାଯାତ୍ରା ମହାକାବ୍ୟର ପରିସମାପ୍ତି ଘଟିଛି । ମହାଯାତ୍ରା ଯଦି ଅସମ୍ପୂର୍ଣ୍ଣ ନହୋଇ ସମ୍ପୂର୍ଣ୍ଣ ହୋଇଥାଆନ୍ତା ତେବେ ଆଧୁନିକ ଓଡ଼ିଆ ସାହିତ୍ୟର ଏକମାତ୍ର ମହାକାବ୍ୟ ପାଇଁ ଆମକୁ ଗର୍ବ କରିବାର ଅବକାଶ ମିଳିଥାଆନ୍ତା । ମହାଯାତ୍ରାରେ କବି ଅମର୍ଷୀଙ୍କ ମୁଖରେ ଯେଉଁ ଉଦ୍‌ବୋଧନ ବାଣୀ ଶୁଣାଇଛନ୍ତି, ସେହି

ବାଣୀକୁ ଭିତ୍ତିକରି ଏ ଦେଶର କୌଣସି ନିଜସ୍ୱାର୍ଥପର ବ୍ୟକ୍ତି ଇଂରେଜ ସରକାରଙ୍କ ନିକଟରେ ରାଧାନାଥଙ୍କ ବିରୁଦ୍ଧରେ ଗୁପ୍ତ ଅଭିଯୋଗ କରିଥିଲେ । ଏହି ଅଭିଯୋଗର ତଦନ୍ତରେ ରାଧାନାଥ ବିଶେଷ ଭାବରେ କ୍ଷୁଣ୍ଣ ହୋଇଥିଲେ । ମହାଯାତ୍ରା ଅସମ୍ପୂର୍ଣ୍ଣ ରହିବା ମୂଳରେ ଏହା ମଧ୍ୟ ଏକ କାରଣ ।

## ଯଯାତିକେଶରୀ:—

ମଗଧର ଯୁବରାଜ ଯଯାତି ଓ ରାଜଜେମା ବିମଳା ଉପମାତାଙ୍କର କୁମନ୍ତ୍ରଣା ଫଳରେ ପିତାଙ୍କ ଦ୍ୱାରା ନିର୍ବାସିତ ହୋଇଥିଲେ । ଯଯାତି ଓ ବିମଳା ଦୁହେଁ ଯମଜ । ଦୁହିଙ୍କର ରୂପରେ ଅଦ୍ଭୁତ ସାମଞ୍ଜସ୍ୟ ଥିଲା । ବିମଳା ପୁରୁଷ ବେଶରେ ନିଜ ଭାଇଙ୍କ ସହିତ ଅଶ୍ୱାରୋହଣ ପୂର୍ବକ ଯାଜପୁରର ବିରଜା ମନ୍ଦିରରେ ପହଞ୍ଚି କିଛୁକାଳ ଅତିବାହିତ କଲେ । ଦିନେ ବିମଳା ମୃଗୟା ଉଦ୍ଦେଶ୍ୟରେ ବନକୁ ଯାଇଥିବା ସମୟରେ ଯଯାତି ମନ୍ଦିରରେ ବସି ଫୁଲ ଗୁନ୍ଥୁଥିଲେ । ଏହି ସମୟରେ ଉତ୍କଳର ରାଜଜେମା ଲଳିତା ମୃଗୟୁବେଶରେ ଦେବୀ ଦର୍ଶନ ପାଇଁ ସେଠାରେ ଆସି ପହୁଞ୍ଚିଲେ । ଯଯାତି ତାଙ୍କୁ ଦେଖି ବିଶେଷ ଭାବରେ ଆକୃଷ୍ଟ ହେଲେ । ଲଳିତା ସଖୀମାନଙ୍କ ସହିତ ଅରଣ୍ୟକୁ ଚାଲିଗଲେ । ଅରଣ୍ୟରେ ଲଳିତା ପୁରୁଷବେଶ ଧାରଣ କରିଥିବା ବିମଳାଙ୍କୁ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହେଲେ । ମାତ୍ର ପରେ ଜାଣିପାରିଲେ ଯେ ସେ ଯୁବକ ନୁହନ୍ତି, ଯୁବତୀ । ତାପରେ ଲଳିତା ବିମଳାଙ୍କୁ ସଙ୍ଗରେ ନେଲେ ଓ ବସ୍ତ୍ରାଲଙ୍କାର ଦେଇ ତାଙ୍କୁ ଯୁବତୀବେଶ ଧାରଣ କରାଇଲେ । ବିମଳା ରାଜ ଅନ୍ତଃପୁରରେ ଅତିଥି ହୋଇ

ରହିଲେ । ସେଠାରୁ ଫେରି ସେ ଯଯାତିଙ୍କୁ ସବୁକଥା କହିଲେ । କିଛିଦିନ ପରେ ଯଯାତି ଲଳିତାଙ୍କ ପ୍ରଦତ୍ତ ବସ୍ତ୍ରାଳଙ୍କାରରେ ଭୂଷିତା ହୋଇ ଲଳିତାଙ୍କ ନିକଟକୁ ଗଲେ । ସେଠାରେ ଲଳିତାଙ୍କର ଆତିଥ୍ୟ ଗ୍ରହଣ କରି ନିଜର ପ୍ରକୃତ ପରିଚୟ ରାତି ସମୟରେ ପ୍ରଦାନ କଲେ । ଯଯାତି ରାଜ ଅନ୍ତଃପୁରରେ ଦିନରେ ଯୁବତୀ ଓ ରାତିରେ ଯୁବକ ବେଶରେ ରହିଲେ । ରାତି ସମୟରେ ଯୁବକ ବେଶରେ ଲଳିତାଙ୍କ ସହିତ ପ୍ରେମ କରିବା କଥା କ୍ରମେ ପ୍ରକାଶ ପାଇଲା । ରାଜା ଏ ସମ୍ବାଦ ପାଇ ଯଯାତିଙ୍କୁ ଅନ୍ତଃପୁରରୁ ଧରିଆଣି ତାଙ୍କୁ ପ୍ରାଣଦଣ୍ଡ ଆଦେଶ ଦେଲେ । ମାତ୍ର ଯଯାତି କ୍ଷତ୍ରିୟଭାବରେ ମୃତ୍ୟୁ ବରଣ କରିବାପାଇଁ ପ୍ରାର୍ଥନା କଲେ ଓ ରାଜା ତାହା ଗ୍ରହଣ କଲେ । ରାଜା ସାତଜଣ ମହାବୀରଙ୍କୁ ପରଦିନ ଯୁଦ୍ଧକରି ଯଯାତିଙ୍କୁ ବିନାଶ କରିବାପାଇଁ ଆଦେଶ ଦେଲେ । ମାତ୍ର ସେଦିନ ରାତିରେ ବିରଜାଦେବୀ ସିଂହବାହନରେ ରାଜା ଓ ସାତଜଣ ବୀରଙ୍କୁ ସ୍ୱପ୍ନଦର୍ଶନ ଦେଇ ଖାତି ପ୍ରଦର୍ଶନ କଲେ । ଯଯାତି ତାଙ୍କର ଏକାନ୍ତ ଅନୁଗତ ଭକ୍ତବୋଲି କହିଲେ । ତେଣୁ ତା ପରଦିନ ବୀରମାନେ ଯଯାତିଙ୍କ ସହିତ ଯୁଦ୍ଧ କରିବାକୁ ଭୟକଲେ । ରାଜା ସାଧାରଣ ଲୋକଙ୍କ ଆଗରେ ସ୍ୱପ୍ନ ବୃତ୍ତାନ୍ତ ବର୍ଣ୍ଣନା କରି ଯଯାତିଙ୍କ ସହିତ ଲଳିତାଙ୍କର ବିବାହ ସମ୍ପନ୍ନ କଲେ । ରାଜା ଯଯାତିଙ୍କୁ ଉତ୍କଳର ସିଂହାସନ ପ୍ରଦାନ କରି ବାନପ୍ରସ୍ଥ ଅବଲମ୍ବନ କଲେ । ବିରଜାଦେବୀଙ୍କ ବାହନ କେଶରୀକୁ ନିଜ ନାମ ସହିତ ସଂଲଗ୍ନ କରି ଯଯାତି ନିଜକୁ ଯଯାତିକେଶରୀ ରୂପେ ନାମିତ କଲେ । ଏହିପରି ଭାବରେ ଉତ୍କଳରେ କେଶରୀ ବଂଶର ଉଦ୍ଭବ ହେଲା ।

ଇତିହାସ ଦୃଷ୍ଟିରୁ ଦେଖିଲେ ଏହାର ସତ୍ୟତା ନାହିଁ । ତେଣୁ ଉତ୍କଳର ନରପତି ଯଯାତିକେଶରୀଙ୍କ ସମ୍ମାନ ଏହାଦ୍ୱାରା ହାନି

ହୋଇଅଛୁ ବୋଲି ଭାବିବାର କୌଣସି କାରଣ ନାହିଁ । ଏହା କବିଙ୍କର ସମ୍ପୂର୍ଣ୍ଣ କାଳ୍ପନିକ ସୃଷ୍ଟି ।

**ଦରବାର—**

୧୮୯୪ ସାଲ ଅଗଷ୍ଟ ମାସ ୨୯ ତାରିଖ ବୁଧବାର ଦିନ ଦୁଇଟା ସମୟରେ ବାରବାଟୀ କିଲାରେ ଗୋଟିଏ ଦରବାର ହୋଇଥିଲା । ଏହି ଦରବାରରେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ମହାମହୋପାଧ୍ୟାୟ ଓ କାଉପୁର ଜମିଦାର ଗୋବିନ୍ଦବଲ୍ଲଭ ରାୟଙ୍କୁ ରାୟବାହାଦୂର ଉପାଧି ଦିଆଯିବାର ଥିଲା । ଏହି ଦରବାରକୁ କଟକରେ ଥିବା ଓ କଟକ ନିକଟସ୍ଥ କେତେକ ରାଜା, ଜମିଦାର ଓ ସରକାରୀ କର୍ମଚାରୀଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଦରବାର ନିମିତ୍ତ ମଣ୍ଡପ ବିଶେଷ ଭାବରେ ସଜ୍ଜିତ ହୋଇଥିଲା । ବଙ୍ଗଳାରୁ ସରକାରୀ ଆଦେଶ ଅନୁସାରେ ଓଡ଼ିଶାର କମିସନର ସାହେବ ଏହି ଦରବାରରେ ଉପାଧି ପ୍ରଦାନ କରିବାକୁ ଉପସ୍ଥିତ ହୋଇଥିଲେ । ଏହି ଦରବାରକୁ ଗୋବିନ୍ଦବଲ୍ଲଭ ରାୟ କେବଳ ଆସିଥିଲେ ମାତ୍ର ସାମନ୍ତ ଚନ୍ଦ୍ରଶେଖର ଆସିପାରି ନ ଥିଲେ ।

ସାମନ୍ତ ଚନ୍ଦ୍ରଶେଖରଙ୍କର ଅନୁପସ୍ଥିତ ରହିବାର କାରଣ ତା ପରଦିନ ଜଣାପଡ଼ିଲା । ଦରବାର ଦିନ ଦୁଇଟା ସମୟରେ ଅନୁଷ୍ଠିତ ହେଲା ମାତ୍ର ଚନ୍ଦ୍ରଶେଖର ସେଦିନ ଚାରିଟା ସମୟରେ କଟକରେ ପହଞ୍ଚିଲେ । ତାଙ୍କର ଧାରଣା ଥିଲା ଯେ ଦରବାର ସେ ଦିନ ଅନୁଷ୍ଠିତ ନ ହୋଇ ତା ପରଦିନ ଅର୍ଥାତ୍ ୩୦ ତାରିଖ ଦିନ ହେବାର କଥା । ତେଣୁ ସେ ଦିନ ଦରବାରରେ କେବଳ ଗୋବିନ୍ଦବଲ୍ଲଭ ରାୟ ଉପାଧି ପାଇଲେ । ସାମନ୍ତ ଚନ୍ଦ୍ରଶେଖରଙ୍କୁ

ଉପାଧି ପ୍ରଦାନ କରିବା ନିମିତ୍ତ କମିସନର କୁକ୍ ସାହେବ ସେପ୍‌ଟେମ୍ବର ମାସ ୩ ତାରିଖ ଦିନ (୩-୯-୧୮୯୪) ତାଙ୍କ କୋଠିରେ ଗୋଟିଏ ଅନ୍ତରଙ୍ଗ ଦରବାର ବସାଇଥିଲେ । କବିବର ରାଧାନାଥ ଏହି ଦୁଇ ଗୋଟି ଦରବାରକୁ ତାଙ୍କ କବିତାରେ ଗ୍ରହଣ କରିଅଛନ୍ତି; ମାତ୍ର ଗୋଟିଏ ଦରବାର ରୂପେ ଅର୍ଥାତ୍ ବାରବାଟୀ ଦୁର୍ଗର ଦରବାର ବୋଲି ବର୍ଣ୍ଣନା କରିଅଛନ୍ତି । ଗୋବିନ୍ଦବଲ୍ଲଭ ରାୟଙ୍କ ନାମ କବି ଉଲ୍ଲେଖ କରି ନାହାନ୍ତି ସତ; ମାତ୍ର ତାଙ୍କୁ ହିଁ ବିଦ୍ରୂପ କରି ଏହି କବିତାଟିକୁ "ବୈୟାସିକି ବାଣୀ" ନାମରେ ରଚନା କରିଥିଲେ । ତା ପରେ ଏହାର ନାମ ପରିବର୍ତ୍ତିତ ହୋଇ ଦରବାର ହୋଇଅଛି ।

ବାରବାଟୀ ଦୁର୍ଗ ପ୍ରାଙ୍ଗଣରେ ଦରବାର ଅନୁଷ୍ଠାନ ବିଷୟ ଉଲ୍ଲେଖ କରି କବି ଅତୀତ ଓ ବର୍ତ୍ତମାନର ଏକ ତୁଳନାତ୍ମକ ବର୍ଣ୍ଣନା ଦେଇଅଛନ୍ତି । ରାଜା ମହାରାଜାମାନେ ଆଡ଼ମ୍ବର ସହକାରେ ଦରବାରକୁ ଆସିବାର ବର୍ଣ୍ଣନା ଅତ୍ୟନ୍ତ ଚମତ୍କାର ଭାବରେ କବି ବର୍ଣ୍ଣନା କରିଅଛନ୍ତି । ଦରବାରରେ ଦିଆଯାଇଥିବା ଉପାଧି ପ୍ରତି କବି ନିଜର ବିରୁଦ୍ଧମତ ପ୍ରକାଶ କରିଅଛନ୍ତି । ତା ପରେ ଦରବାର ପ୍ରାଙ୍ଗଣରେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା ଆସନ ବିଷୟରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କର କଳିକଜିଆକୁ ଲକ୍ଷ୍ୟକରି କବି ମାନବ ସମାଜକୁ ଉପଦେଶ ପ୍ରଦାନ କରିଅଛନ୍ତି । କବି ନିଜର ମତପ୍ରକାଶ କରି ଜନସମାଜକୁ ସାବଧାନ କରିଦେଇ ଅଛନ୍ତି ଯେ, ଏ ସଂସାରରୁ ବିଦାୟ ନେବା ପରେ ଯମ ଦରବାରରେ ଉଚ୍ଚ ଆସନ ପାଇବା ପାଇଁ ଏହି ଜୀବନରେ କାର୍ଯ୍ୟକରିବା ଉଚିତ । ତା ପରେ ରାଜାମାନଙ୍କର ଭୋଗବିଳାସମୟ ଜୀବନକୁ କବି ନିର୍ମମ

ଭାବରେ ସମାଲୋଚନା କରିଅଛନ୍ତି । ସେମାନଙ୍କୁ ମଧ୍ୟ ଉପଯୁକ୍ତ କର୍ମ କରିବା ପାଇଁ କବି ଉପଦେଶ ପ୍ରଦାନ କରିଅଛନ୍ତି । କବି ଦରବାରର ଶେଷଭାଗରେ ସାମନ୍ତ ଚନ୍ଦ୍ରଶେଖରଙ୍କ ବିଷୟରେ ନିଜର ମତ ପ୍ରକାଶ କରିଅଛନ୍ତି । ଦରବାର କାବ୍ୟ ତତ୍କାଳୀନ ସାମାଜିକ ଜୀବନର ଏକ ସ୍ପଷ୍ଟ ରୂପରେଖ ପ୍ରଦାନ କରିଅଛି ଏବଂ ତତ୍ସହିତ କବିଙ୍କର ବହୁମୂଲ୍ୟ ଅଭିଜ୍ଞତାକୁ ଅନ୍ତରାଳରେ ରଖି ଉପଦେଶର ନିର୍ଝର ପ୍ରବାହିତ କରିଅଛି ।

## ( ୫ ) ରାଧାନାଥଙ୍କର ଅନ୍ୟାନ୍ୟ ରଚନା—

କବିବର ରାଧାନାଥଙ୍କର ସଂସ୍କୃତ ସାହିତ୍ୟରେ ଯଥେଷ୍ଟ ପାଣ୍ଡିତ୍ୟ ଥିଲା । ତାଙ୍କର ବିଭିନ୍ନ କାବ୍ୟଗୁଡ଼ିକର ଆହରଣ ମଧ୍ୟରେ ଏହା ପ୍ରମାଣିତ ହୋଇଅଛି । କେବଳ ସେତିକି ନୁହେଁ; ଉତ୍କଳ ସମ୍ମିଳନୀରେ ଗୀତ ହେବା ପାଇଁ ସେ ଯେଉଁ "ଭାରତଗୀତିକା" ରଚନା କରିଥିଲେ, ତାହା ତାଙ୍କର ସଂସ୍କୃତ ଜ୍ଞାନର ପରିଚୟ ପ୍ରଦାନ କରିଅଛି । ସେ କାଳିଦାସଙ୍କର ମେଘଦୂତକୁ ଓଡ଼ିଆରେ ଅନୁବାଦ କରିଥିଲେ ଓ ୧୮୭୪ ସାଲରେ ଏହା 'ଉତ୍କଳ ଦର୍ପଣ'ରେ ପ୍ରକାଶିତ ହୋଇଥିଲା । ମେଘଦୂତ ଅନୁବାଦରେ ରାଧାନାଥ ତାଙ୍କର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଅଛନ୍ତି । ମେଘଦୂତର ଅନୁବାଦ ପାଠ କଲାବେଳେ ଯେ କୌଣସି ଓଡ଼ିଆ ପାଠକ ମନେକରେ—ସତେ ଯେପରି ଏହା ଏକ ମୌଳିକ ରଚନା ।

୧୮୭୭ ସାଲରେ ପ୍ରକାଶିତ "କବିତାବଳୀ"ର ବିଭିନ୍ନ କବିତାଗୁଡ଼ିକ ସେତେବେଳର ପାଠ୍ୟପୁସ୍ତକ ଶ୍ରେଣୀଭୁକ୍ତ ହେଲେ ହେଁ ଏଗୁଡ଼ିକ ରାଧାନାଥଙ୍କର କବି-ପ୍ରତିଭାର ପରିଚୟ ପ୍ରଦାନ କରି

ଅଛନ୍ତି । "ପବନ" କବିତାରେ ସେ ନିଜର ମନୋଭାବ ଓ ପ୍ରାକୃତିକ ବର୍ଣ୍ଣନାର ପ୍ରକାଶ ସହିତ ଭାଷାର ସୌଷ୍ଠବ ରକ୍ଷା କରିଛନ୍ତି । "ବେଣୀସଂହାର"ରେ ବୀର ଏବଂ ରୌଦ୍ରରସର ମିଳନ ହୋଇଅଛି । ନିଜର ରାଜଭକ୍ତିର ଆବେଗକୁ ପ୍ରକାଶ କରିବା ଉଦ୍ଦେଶ୍ୟରେ ସେ "ଭାରତେଶ୍ୱରୀ" ରଚନା କରିଛନ୍ତି । ୧୮୯୪ ସାଲରେ ପ୍ରକାଶିତ "ତୁଳସୀ-ସ୍ତବକ"ରେ ବର୍ଷା ଓ ଶରତ ଋତୁର ବର୍ଣ୍ଣନା ସ୍ଥାନ ପାଇଅଛି । ଏହା ସନ୍ଥ ତୁଳସୀ ଦାସଙ୍କ ରାମାୟଣର କେତେକ ଉପଦେଶାତ୍ମକ ପଦର ଓଡ଼ିଆ ଅନୁବାଦ ମାତ୍ର । ଉର୍ବଶୀ କାବ୍ୟ କବିଙ୍କ ଲେଖନୀରେ ସମାପ୍ତି ଲାଭ କରିପାରି ନାହିଁ । ଦଶରଥ ବିୟୋଗ, ସାବିତ୍ରୀ ଚରିତ ଓ ମହେନ୍ଦ୍ରଗିରି ପ୍ରଭୃତି ରଚନା କବିବର ରାଧାନାଥଙ୍କର ପ୍ରକୃଷ୍ଟ ପରିଚୟ ଦେବାକୁ ଅସମର୍ଥ ।

ଏହାଛଡ଼ା କବିବର ରାଧାନାଥଙ୍କର ବହୁ କ୍ଷୁଦ୍ରରଚନା ରହିଅଛି । ସେଗୁଡ଼ିକ ସାମୟିକ ଭାବରେ ରଚିତ । ସେଗୁଡ଼ିକରୁ ରାଧାନାଥଙ୍କ ପ୍ରତିଭାର ପ୍ରକୃଷ୍ଟ ପରିଚୟ ଖୋଜିବସିବା ଉଚିତ ନୁହେଁ । ରାଧାନାଥଙ୍କର ଗଦ୍ୟରଚନା ବିଷୟରେ ମଧ୍ୟ ଆଲୋଚନା କରିବାର କଥା ।

## ( ୭ ) ରାଧାନାଥଙ୍କର ଗଦ୍ୟରଚନା—

କବିବର ରାଧାନାଥଙ୍କ ଗଦ୍ୟରଚନାର ବୈଶିଷ୍ଟ୍ୟ ବିଷୟରେ ପାଠକ ସଚେତନ ନୁହେଁ । କାରଣ ତାଙ୍କର କାବ୍ୟକବିତା ହିଁ ତାଙ୍କ କବି-ଜୀବନର ବଶିଷ୍ଟ ପରିଚୟ ପ୍ରଦାନ କରିଅଛି । ତେଣୁ ରାଧାନାଥଙ୍କ ଗଦ୍ୟସୃଷ୍ଟି ବିଷୟରେ ସମାଲୋଚନା ଆଶାନୁରୂପ

ହୋଇ ପାରିନାହିଁ । ତାଙ୍କର ଉପନ୍ୟାସ "ଇତାଲୀୟ ଯୁବା", ପ୍ରବନ୍ଧ "ବିବେକୀ", "ପାର୍ବତୀ" କାବ୍ୟର ଉପସଂହାର, "ଉର୍ବଶୀ" କାବ୍ୟର ଉପସଂହାର, ଭ୍ରମଣକାରୀର ପତ୍ର, ଭ୍ରମଣ ବୃତ୍ତାନ୍ତ "ବାମଣ୍ଡା" ଜୀବନୀ "ସାର୍ ବାସୁଦେବ ସୁଢଳଦେବ" ଓ ଲିଖିତ ଭାଷଣ "ଉତ୍କଳ ସାହିତ୍ୟର ଉନ୍ନତି" ପ୍ରଭୃତିରୁ ତତ୍କାଳୀନ ଓଡ଼ିଆ ଗଦ୍ୟ ସାହିତ୍ୟର ସ୍ୱରୂପ ବିଷୟ ଜଣାଯାଏ ।

ଇତାଲୀୟ ଯୁବାରେ ରାଧାନାଥଙ୍କର ପ୍ରତିଭାର ସମୁଜ୍ଜ୍ୱଳ ବିକାଶ ହୋଇ ନାହିଁ ସତ, ମାତ୍ର ତାଙ୍କର ସ୍ୱାଧୀନଚେତା ମନୋଭାବ ଓ ରସିକତା କେତେକ ସ୍ଥଳରେ ପ୍ରକାଶିତ ହୋଇଅଛି । ହାସ୍ୟ ଓ କରୁଣ ଉଭୟ ରସର ମିଶ୍ରଣରେ ଭାବ ସ୍ୱଚ୍ଛ ହୋଇଅଛି । ବିବେକୀ ଗୋଟିଏ ଦୀର୍ଘ ପ୍ରବନ୍ଧ । ଏହି ପ୍ରବନ୍ଧରେ ଲେଖକଙ୍କର ବୁଦ୍ଧିମତ୍ତା, ପାଣ୍ଡିତ୍ୟ ତଥା ମାନବ ଚରିତ୍ର ଅନୁଶୀଳନରେ ପାରଦର୍ଶିତାର ପରିଚୟ ବିଶେଷ ଭାବରେ ମିଳିଅଛି । ରାଧାନାଥଙ୍କର ଉଦାର ପ୍ରକୃତି ଓ ବ୍ୟକ୍ତିତ୍ୱର ପରିଚୟ ଏହି ପ୍ରବନ୍ଧରୁ ମିଳିଥାଏ । ବହୁ ସାମାଜିକ ରୀତିନୀତି, ଚଳଣି ପ୍ରଭୃତି ଏଥିରେ ସ୍ପଷ୍ଟଭାବରେ ଆଲୋଚିତ ହୋଇଅଛି ।

ପାର୍ବତୀ କାବ୍ୟର ଉପସଂହାର ଓ ଉର୍ବଶୀ କାବ୍ୟର ଉପସଂହାର କେବଳ ଏହି କାବ୍ୟଦ୍ୱୟର ଅସମାପ୍ତ ଅଂଶର ଖସଡ଼ା ମାତ୍ର । ଭ୍ରମଣ ବୃତ୍ତାନ୍ତ ହିସାବରେ ୧୮୮୭ ମସିହାରେ ନବସଂବାଦରେ ପ୍ରକାଶ ପାଇଥିବା ତାଳଚେର ଓ ବାମଣ୍ଡା ଭ୍ରମଣର ବିବରଣୀ ଉଲ୍ଲେଖଯୋଗ୍ୟ । ଏଥିରେ ଲହଡ଼ା ଓ କେନ୍ଦୁଝର ବୃତ୍ତାନ୍ତ ମଧ୍ୟ ବର୍ଣ୍ଣିତ । ୧୮୯୬ ସାଲରେ ଓଡ଼ିଆ ଓ ନବସଂବାଦରେ ପ୍ରକାଶିତ "ବାମଣ୍ଡା" ହିଁ ବାମଣ୍ଡାର ଭ୍ରମଣବୃତ୍ତାନ୍ତ । ସାର୍ ବାସୁଦେବ

ସୁତଲଦେବଙ୍କ ଜୀବନୀ ପ୍ରସଙ୍ଗରେ ସେ ସୁତଲଦେବଙ୍କର ସଦ୍‌ଗୁଣାବଳୀ ବର୍ଣ୍ଣନା କରିଅଛନ୍ତି । ଉତ୍କଳ ସାହିତ୍ୟର ଉନ୍ନତି ବିଷୟକ ଲିଖିତ ଭାଷଣଟି ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନରେ କବିଙ୍କ ଦ୍ୱାରା ପଠିତ ମନ୍ତବ୍ୟ । ରାଧାନାଥ ବିଭିନ୍ନ ସ୍ଥାନକୁ ପରିଦର୍ଶନରେ ଯିବା ସମୟରେ ତାଙ୍କ ସଙ୍ଗରେ ଗୋଟିଏ ଟିପାଖାତା ରଖିଥାଆନ୍ତି । ଯାହା ନୂତନ ଦୃଶ୍ୟ ବା ନୂତନ ବିଷୟ ସେ ଦେଖନ୍ତି ବା ଶୁଣନ୍ତି, ତାହାକୁ ସେଥିରେ ସେ ଲେଖିରଖନ୍ତି । ସେହି ଟିପାଖାତାର ଏକ ଅଂଶ ରାଧାନାଥ ଗ୍ରନ୍ଥାବଳୀରେ ସ୍ଥାନ ପାଇଅଛି ।

ରାଧାନାଥଙ୍କ ଗଦ୍ୟରଚନା ପାଠ କଲେ ତାଙ୍କର ଗଦ୍ୟଶୈଳୀ ବିଷୟରେ ଏକ ସ୍ପଷ୍ଟଧାରଣା ଆସେ । ରାଧାନାଥଙ୍କ ପୂର୍ବରୁ ଆଧୁନିକ ଓଡ଼ିଆ ଗଦ୍ୟଶୈଳୀ ବିଶେଷ ଉନ୍ନତ ଅବସ୍ଥାରେ ନ ଥିଲା । ରାଧାନାଥଙ୍କର ଗଦ୍ୟଶୈଳୀ ସତେ ଯେପରି ଆଧୁନିକ ଓଡ଼ିଆ ଗଦ୍ୟଶୈଳୀ ପାଇଁ ସେତେବେଳେ ଏକ ନିର୍ଭର ପ୍ରତିଶ୍ରୁତି ପ୍ରଦାନ କରିଥିଲା ।

## ( ୬ ) ରାଧାନାଥ ସାହିତ୍ୟରେ ଚରିତ୍ରଚିତ୍ରଣ—

ରାଧାନାଥ ପୂର୍ବ ଯୁଗରେ କାବ୍ୟମାନଙ୍କରେ ଚରିତ୍ରଚିତ୍ରଣର ବୈଚିତ୍ର୍ୟ ପରିଲକ୍ଷିତ ହୋଇ ନ ଥିଲା । କାରଣ ମଧ୍ୟଯୁଗର ଓଡ଼ିଆ କାବ୍ୟମାନଙ୍କରେ ମୁଖ୍ୟତଃ ଏକ ଶ୍ରେଣୀର ନାୟକନାୟିକା ପରିଦୃଷ୍ଟ ହୁଅନ୍ତି । ରାଧାନାଥଙ୍କ ସାହିତ୍ୟସୃଷ୍ଟିରେ ନାୟକ ନାୟିକାମାନେ ବିଦେଶୀୟ କଥାବସ୍ତୁରୁ ଆସିଥିବାରୁ ସମାଲୋଚକମାନେ ନାୟକନାୟିକାଙ୍କର ଚରିତ୍ରରେ କୌଣସି ମୌଳିକ ଲକ୍ଷଣ

ଦେଖିବାକୁ ପାଆନ୍ତି ନାହିଁ । ଗୌଣ୍ଣ, ଚନ୍ଦ୍ରଭାଗା ଓ ନନ୍ଦକେଶ୍ୱରୀ ପ୍ରଭୃତି ଓଭେଡ୍‌ଙ୍କ ନାୟିକାମାନଙ୍କର ଓଡ଼ିଆ ରୂପାନ୍ତର । ଏହିସବୁ ନାୟିକାମାନେ ରାଧାନାଥଙ୍କ ହାତରେ କୌଣସି ବିଶେଷ ପରିବର୍ତ୍ତିତ ରୂପ ଗ୍ରହଣ କରି ନାହାନ୍ତି । ଗୌଣ୍ଣର ପ୍ରଣୟ ପିପାସା, ଚନ୍ଦ୍ରଭାଗାର ପ୍ରଣୟ ବିତୃଷ୍ଣା ଓ ନନ୍ଦିକାର ପ୍ରଣୟ ପିପାସା ମୂଳ କଥାବସ୍ତୁ ଅନୁସରଣର ଫଳ । ଏହି ଦୃଷ୍ଟିରୁ ଦେଖିଲେ ଏହି କାବ୍ୟମାନଙ୍କର ନାୟକନାୟିକାମାନେ କେହି ରାଧାନାଥଙ୍କର ମାନସ ସନ୍ତାନ ନୁହନ୍ତି ।

ନନ୍ଦିକାଙ୍କର ପ୍ରଣୟ ଲିପ୍‌ସାର ପ୍ରାବଲ୍ୟ ସମାଲୋଚକର ଦୃଷ୍ଟି ଆକର୍ଷଣ କରେ । ନିଜର ପ୍ରଣୟର ପୂର୍ଣ୍ଣତା ପାଇଁ ପିତା, ସମାଜ ତଥା ରାଜ୍ୟ ପ୍ରତି ଦୃଷ୍ଟି ନ ଦେଇ ସେ ଯେପରି କାର୍ଯ୍ୟ କରିଥିଲେ, ତାହା ଘୃଣ୍ୟ ହୋଇପାରେ; ମାତ୍ର କାବ୍ୟର ପରି ସମାପ୍ତିରେ ନନ୍ଦିକାଙ୍କର ନିଷ୍ଫଳ ପ୍ରଚେଷ୍ଟାର ପରିଣାମ ପାଠକ ହୃଦୟରେ ସମବେଦନା ଜାତ କରେ । ଏପରି ଚରିତ୍ର ସୃଷ୍ଟି ପାଇଁ ରାଧାନାଥଙ୍କୁ ବହୁ ଭାବରେ ଆକ୍ଷେପ କରାଯାଇଅଛି ।

ପାର୍ବତୀ କାବ୍ୟରେ ଚରିତ୍ରଗୁଡ଼ିକ ରାଧାନାଥଙ୍କ କଳ୍ପନାପ୍ରସୂତ ନୁହନ୍ତି । ସେମାନେ ସେହି ବିଦେଶୀ ଗଳ୍ପରୁ ଆନୀତ । କୌଶଲ୍ୟା ଚରିତ୍ର ସ୍ୱାଭାବିକ ହୋଇପାରେ, ମାତ୍ର ଗଙ୍ଗେଶ୍ୱର ଚରିତ୍ରର ଅପକର୍ମ ସାମାଜିକ ସଂହତି ପ୍ରତି ଏକ କୁଠାରାଘାତ । ଗଙ୍ଗେଶ୍ୱରଙ୍କର ଏ ପ୍ରକାର କର୍ମଲାଗି ରାଧାନାଥ ନିନ୍ଦିତ ହୋଇଛନ୍ତି ସତ, ମାତ୍ର ଗଙ୍ଗେଶ୍ୱର ପ୍ରକୃତ ପକ୍ଷରେ ଉତ୍କଳ ନରେଶ ନୁହନ୍ତି । ସେ ହେଉଛନ୍ତି ଆସ୍‌କାଇଲ୍‌ସ୍‌ଙ୍କ "ଆଗାମେମ୍‌ନନ" । ଠିକ୍ ସେହିପରି ପାର୍ବତୀ ହେଉଛନ୍ତି ଆସ୍‌କାଇଲସ୍‌ଙ୍କର "କ୍ଲାଇଟେମ୍‌ନେଷ୍ଟ୍ରା" !

ତେଣୁ ଏ କ୍ଷେତ୍ରରେ ଚରିତ୍ରଚିତ୍ରଣର ସ୍ୱାଭାବିକତାର ପ୍ରଶ୍ନ ଉଠି ନ ପାରେ ।

ଉଷା କାବ୍ୟରେ ଉଷା-ଜୟନ୍ତ ଉପାଖ୍ୟାନ ମୁଖ୍ୟତଃ ପୌରାଣିକ । ଆଟ୍‌ଲାଣ୍ଟାରେସ୍‌ର କଥାବସ୍ତୁକୁ ମହାଭାରତର କଥାବସ୍ତୁ ସହିତ ମିଶାଇ ଦେଇ ରାଧାନାଥ କୁଶଳୀ ଶିଳ୍ପୀର ପରିଚୟ ଦେଇ ଅଛନ୍ତି; ମାତ୍ର ଚରିତ୍ର ଚିତ୍ରଣ ପାଇଁ ତାଙ୍କର ଏଠାରେ ସ୍ୱାଧୀନତା କାହିଁ ? କଥାବସ୍ତୁର ସଂହତି ପାଇଁ କବି ଦୈବୀଶକ୍ତିର ଆରୋପ କରିଅଛନ୍ତି । ଚିଲିକା କାବ୍ୟରେ ପୁରୁଷୋତ୍ତମଦେବ କେବଳ ଶୌର୍ଯ୍ୟ-ବୀର୍ଯ୍ୟର ପ୍ରତୀକ ଏବଂ ପଦ୍ମାବତୀ ସୌନ୍ଦର୍ଯ୍ୟର ପ୍ରତୀକ । ରକ୍ତବାହୁର ଆସୁରୀଶକ୍ତି ତାର ଇତର ଚରିତ୍ରର ସୂଚନା ପ୍ରଦାନ କରେ ।

ମହାଯାତ୍ରାର କଥାବସ୍ତୁ ମହାଭାରତର ଉପାଖ୍ୟାନ ଉପରେ ଆଶ୍ରୟ କରିଅଛି । ଯୁଧିଷ୍ଠିର ବା ଅଗ୍ନିଦେବଙ୍କ ଚରିତ୍ର ବିଷୟରେ କିଛି କହିବାର ନାହିଁ । ମାତ୍ର କଳିର ଆଗମନ ସମୟରେ କାମ, କ୍ରୋଧ, ଲୋଭ, ମୋହ, ମଦ, ଈର୍ଷା ପ୍ରଭୃତି ନିଜ ନିଜର ବୈଶିଷ୍ଟ୍ୟ ପ୍ରକାଶ ପୂର୍ବକ ଯେପରି ଭାବରେ ଆସିଛନ୍ତି, ତହିଁରୁ କବିଙ୍କର ଚରିତ୍ର ଚିତ୍ରଣର ପରାକାଷ୍ଠା ସୂଚିତ । ଅମର୍ଷୀଙ୍କ ମୁଖରେ କବି ଏକ ବୀର ସୈନିକର ବାଣୀ ଗ୍ରଥିତ କରି ଏକ ପ୍ରକୃତ ବୀରରୂପେ ତାଙ୍କୁ ଅମରତ୍ୱ ପ୍ରଦାନ କରିଅଛନ୍ତି ।

ଦରବାର କାବ୍ୟରେ ସମାଲୋଚନା ପ୍ରସଙ୍ଗରେ ଆଧୁନିକ ସମାଜର ରାଜକର୍ମଚାରୀ ଓ ରାଜାରଜୁଡ଼ାମାନଙ୍କୁ କବି ନିଷ୍ଠୁର ଭାବରେ ବ୍ୟଙ୍ଗବାଣ ପ୍ରୟୋଗ କରିଅଛନ୍ତି । ଏ ପ୍ରସଙ୍ଗରେ କେବଳ

ଏତିକି କହିଲେ ଯଥେଷ୍ଟ ହେବ ଯେ ତତ୍କାଳୀନ ଅନୁକରଣଶୀଳ ସମାଜରେ ରାଜକର୍ମଚାରୀ ଓ ରାଜାରାଜୁଡ଼ାମାନେ ନିଜ ନିଜର ବାସ୍ତବ ରୂପ ଦରବାରରେ ପ୍ରକାଶ କରିଅଛନ୍ତି । ସାମନ୍ତ-ଚନ୍ଦ୍ରଶେଖରଙ୍କ ମହାମାୟୁ ଗୁଣର ସମ୍ୟକ ବର୍ଣ୍ଣନା କବି ପ୍ରଦାନ କରିଅଛନ୍ତି । ସମଗ୍ର ସମାଜର ଅଧୋଗତି ଦେଖି ବ୍ୟଥିତ ରାଧାନାଥ ଯେପରି ଭାବରେ ଆଧୁନିକ ଶିକ୍ଷିତ ଗୋଷ୍ଠୀଙ୍କୁ ସମାଲୋଚନା କରିଛନ୍ତି, ଠିକ୍ ସେହିପରି ଭାବରେ ନିଜର ତିକ୍ତ ଅନୁଭୂତି ପ୍ରକାଶ କରି ସମାଜକୁ ସାବଧାନ ବାଣୀ ଶୁଣାଇ ଅଛନ୍ତି ।

ଯଯାତିକେଶରୀ କାବ୍ୟରେ ରାଧାନାଥ ଯଯାତିଙ୍କର ଚରିତ୍ର ଚିତ୍ରଣ କରିବାକୁ ଯାଇ କାଳ୍ପନିକ ଭାବରେ ଯେପରି ଚିତ୍ରଣ କରି ଅଛନ୍ତି, ତାହା ତାଙ୍କର ପ୍ରତିଭା ବଳୟର ପରିଚୟ ପ୍ରଦାନ କରେ । ଯଯାତି ଚରିତ୍ର ସହିତ ଉତ୍କଳର କେଶରୀବଂଶକୁ ଯୋଡ଼ି ଦେବାରେ ତାଙ୍କର କାଳ୍ପନିକ ଶକ୍ତି ହିଁ କେବଳ ଦାୟୀ । ଲଳିତା ଚରିତ୍ରରେ ମଧ୍ୟ ସେପରି କୌଣସି ବୈଶିଷ୍ଟ୍ୟ ଦେଖାଯାଏ ନାହିଁ । ଲଳିତା ସତେ ଯେପରି ଏକ ମଧ୍ୟଯୁଗୀୟ କାବ୍ୟନାୟିକା ।

ଦଶରଥ ବିୟୋଗ, ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ, ସାବିତ୍ରୀ ପ୍ରଭୃତିରେ ପୌରାଣିକ କଥାବସ୍ତୁର ଆରୋପ କରାଯାଇ ଥିବାରୁ ଚରିତ୍ର ଚିତ୍ରଣ ବିଷୟରେ ରାଧାନାଥଙ୍କର କୌଣସି ସ୍ୱାତନ୍ତ୍ର୍ୟ ନ ଥିବାର କଥା ।

କବିବର ରାଧାନାଥ ପାର୍ବତୀ କାବ୍ୟରେ ଗଙ୍ଗେଶ୍ୱରଙ୍କ ଚରିତ୍ର ଚିତ୍ରଣ ଦ୍ୱାରା ଆମର ସାମାଜିକ ନୀତି ମୂଳରେ କୁଠାରାଘାତ କରିଅଛନ୍ତି ବୋଲି ଯେଉଁ ଆକ୍ଷେପ ହୁଏ, ତାହାର ସପକ୍ଷ ଓ

ବିପକ୍ଷରେ ବହୁ ଆଲୋଚନା ହୋଇଯାଇଅଛି । ଆମକୁ ଏଠାରେ ମନେ ରଖିବାକୁ ହେବ ଯେ, ଗଙ୍ଗେଶ୍ୱର ଆମ ସମାଜର ବ୍ୟକ୍ତି ନୁହନ୍ତି । ତାଙ୍କର ସ୍ଥାନ ବିଦେଶୀ ସମାଜରେ । ପୁଣି ଏହି ଚରିତ୍ରର ଅପକର୍ମଜନିତ ପ୍ରତିକାର ରାଧାନାଥ ପାର୍ବତୀ କାବ୍ୟର ଉପସଂହାରରେ ଲେଖି ଯାଇଅଛନ୍ତି । ପାର୍ବତୀଙ୍କ ଚରିତ୍ର ଜରିଆରେ ଏହି ଅପକର୍ମର ପ୍ରତିକାର କରାଯାଇଅଛି । ସେ ଯାହା ହେଉନା କାହିଁକି, ରାଧାନାଥଙ୍କର ଆହରଣ ସୂତ୍ର ନଜାଣି ତାଙ୍କୁ ଏପରି ଦୋଷଯୁକ୍ତ କରିବା ଉଚିତ ନୁହେଁ । ରାଧାନାଥଙ୍କର ବୈଶିଷ୍ଟ୍ୟ କେବଳ ଆହରଣର ସମନ୍ୱୟରେ ନିହିତ ।

## (୮) ରାଧାନାଥଙ୍କର ପ୍ରକୃତ-ପ୍ରେମିକତା—

ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମଦାତା କବିବର ରାଧାନାଥ ରାୟ ବାଲ୍ୟକାଳରୁ ପ୍ରକୃତି ସହିତ ପରିଚିତ ଥିଲେ । ଏ ପ୍ରସଙ୍ଗରେ ତାଙ୍କ ଜୀବନର ଗୋଟିଏ ଅନୁଭୂତି ଏଠାରେ ପ୍ରକାଶ କଲେ ଅପ୍ରାସଙ୍ଗିକ ହେବ ନାହିଁ । ରାଧାନାଥଙ୍କ ବୟସ ଯେତେବେଳେ ପାଞ୍ଚ ବା ଛଅ ବର୍ଷ ସେତେବେଳେ ତାଙ୍କର ମାତୃବିୟୋଗ ହେଲା । ଯେତେବେଳେ ତାଙ୍କର ମାଆଙ୍କର ଶବ ଶ୍ମଶାନକୁ ନିଆଗଲା ସେତେବେଳେ ରାଧାନାଥ କାନ୍ଦି କାନ୍ଦି ଶବ ପଛେ ପଛେ ଶ୍ମଶାନ ପର୍ଯ୍ୟନ୍ତ ଯାଇଥିଲେ । ତାଙ୍କର ଏପରି ଅବସ୍ଥା ଦେଖି ତାଙ୍କର ଆଈମା ତାଙ୍କୁ ବୁଝାଇ ଦେଲେ ଯେ ମା ମାସକପରେ ଫେରି ଆସିବେ । ସରଳପ୍ରାଣ ଶିଶୁ ରାଧାନାଥ ଏ କଥାକୁ ସତ ମଣି ବାଟରେ ଭୁଇଁ ବରକୋଳି ଖାଇବାପାଇଁ ଏକ ପୋଖରୀ ହୁଡ଼ାରେ ରହିଗଲେ । ମାତ୍ର ଅଳ୍ପ ସମୟ ପରେ ନିକଟସ୍ଥ ଶ୍ମଶାନ ଭୂମିରେ

ଜ୍ୱଳନ୍ତ ଅଗ୍ନିଶିଖା ଦେଖି ଭୟପାଇ ରାଧାନାଥ ଘରକୁ ଫେରି ଆସିଲେ । ମାସକ ପରେ ମା ଆଉ ଫେରି ନ ଆସିବାର ଦେଖି ତାଙ୍କ ମନରେ ଗଭୀର ଦୁଃଖ ଏବଂ ସନ୍ଦେହ ଜାତ ହେଲା । ତେଣୁ ସେ ପ୍ରାୟ ପ୍ରତିଦିନ ଶବଦାହ ସ୍ଥାନକୁ ଯାଇ ସେଠାରେ ଥିବା ଏକ ବଟବୃକ୍ଷ ମୂଳରେ ବସି ମା'ଙ୍କର ଶେଷକୃତ୍ୟ ସମାପନ ହୋଇଥିବା ସ୍ଥାନର ଭସ୍ମରାଶି ଦେଖି ନୀରବରେ ଅଶ୍ରୁତ୍ୟାଗ କରିଥିଲେ । ଏହି ସମୟଠାରୁ ତାଙ୍କ ଜୀବନରେ ଉଦାସୀନତା ଦେଖା ଦେଲା । ବାରମ୍ବାର ଗୋଟିଏ ଶ୍ମଶାନର ନିର୍ଜନ ପରିବେଶରେ ବସି ଦୁଃଖରେ ଚିନ୍ତା କରିବା ସମୟରେ ରାଧାନାଥଙ୍କ ଆଖି ଆଗରେ ସେ ସ୍ଥାନର ପ୍ରକୃତି ଯେପରି ଭାବରେ ଆତ୍ମପ୍ରକାଶ କରିଥିଲା, ତାହା ତାଙ୍କ ଜୀବନ ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରିଥିଲା । ସେହି ସମୟଠାରୁ ରାଧାନାଥ ଜନନୀ, ଜନ୍ମଭୂମି ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇ ପଡ଼ିଥିଲେ । ପ୍ରକୃତିକୁ ପର୍ଯ୍ୟବେକ୍ଷଣ କରିବାର ଶକ୍ତି ବାଲ୍ୟକାଳରୁ ସେ ଏହି ଶ୍ମଶାନଭୂମିରୁ ଲାଭ କରିଥିଲେ ଏବଂ ପିତାଙ୍କ ସହିତ ବିଭିନ୍ନ ସ୍ଥାନ ପରିଦର୍ଶନ କରିବା ସମୟରେ ମଧ୍ୟ ତାଙ୍କର ଏ ଶକ୍ତି ବୃଦ୍ଧିଲାଭ କରିଥିଲା । ସରକାରୀ କର୍ମଚାରୀ ଭାବରେ ସେ ଯେତେବେଳେ ଓଡ଼ିଶାର ବିଭିନ୍ନସ୍ଥାନ ଭ୍ରମଣ କରିଥିଲେ ସେତେବେଳେ ମଧ୍ୟ ଉତ୍କଳ ପ୍ରକୃତିର ଚିକ୍କଣି ଚିକଣି ବିବରଣୀ ତାଙ୍କ ଦୃଷ୍ଟିପଥରୁ ବାଦ୍ ଯାଇନାହିଁ । ପ୍ରକୃତିର ସୌନ୍ଦର୍ଯ୍ୟ ପ୍ରତି ତାଙ୍କର ଏପରି ମମତା ଥିଲା ଯେ ସେ କର୍ମକ୍ଷେତ୍ରରୁ ଛୁଟିନେଇ ଭାରତର ବିଭିନ୍ନ ସ୍ଥାନ ପରିଦର୍ଶନ କରିବାକୁ ଯାଇଥିଲେ । ଏ ପରିଦର୍ଶନର ଉଦ୍ଦେଶ୍ୟ ଥିଲା କେବଳ ନୂଆ ନୂଆ ସ୍ଥାନ ଭ୍ରମଣ କରି ନୂଆ ନୂଆ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଲବ୍ଧି କରିବା । ଓଡ଼ିଶାର ଯେ କୌଣସି କବି ଓଡ଼ିଶାର ପ୍ରାକୃତିକ ଦୃଶ୍ୟ ଦେଖି

ପାରିଛନ୍ତି, ମାତ୍ର ରାଧାନାଥ ଯେପରି ଭାବରେ ଓଡ଼ିଶାର ପ୍ରକୃତିକୁ ଦେଖିଛନ୍ତି ସେପରି ଭାବରେ ଅନ୍ୟ କେହି ଦେଖି ପାରିନାହାନ୍ତି । ରାଧାନାଥଙ୍କର ଦୃଷ୍ଟିକୋଣ ସ୍ୱତନ୍ତ୍ର । ସେ ଦୃଷ୍ଟିକୋଣ ଏବେ ମଧ୍ୟ କୌଣସି କବିଙ୍କର ନାହିଁ ।

ପ୍ରକୃତି ପ୍ରତି ରାଧାନାଥଙ୍କର ଗଭୀର ମମତା ତାଙ୍କର କାବ୍ୟ-ମାନଙ୍କରେ ପ୍ରତିଫଳିତ ହୋଇଅଛି । ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା, ପାର୍ବତୀ, ଚିଲିକା ପ୍ରଭୃତି କାବ୍ୟଗୁଡ଼ିକରେ ରାଧାନାଥ ପ୍ରକୃତିକୁ ଅପରୂପ ସୌନ୍ଦର୍ଯ୍ୟରେ ଭୂଷିତ କରିଅଛନ୍ତି । ଅନ୍ୟାନ୍ୟ କାବ୍ୟମାନଙ୍କଠାରୁ ଚିଲିକାର କଥା ସ୍ୱତନ୍ତ୍ର । କାରଣ ଚିଲିକା କାବ୍ୟ କେବଳ ଚିଲିକା ହ୍ରଦର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ମୁଖରିତ । ଚନ୍ଦ୍ରଭାଗାରେ କବି ପୁଷ୍ୟାଭିଷେକ ନିମିତ୍ତ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଆସିଥିବା ଦେବଦେବୀମାନଙ୍କ ବର୍ଣ୍ଣନା ଦେଇଅଛନ୍ତି । ଏହି ବର୍ଣ୍ଣନାରେ ଉତ୍କଳର ବିଭିନ୍ନ ସ୍ଥାନରୁ ଆସିଥିବା ଦେବଦେବୀ-ମାନଙ୍କ କଥା କୁହାଯାଇଅଛି । ଏହି ପ୍ରସଙ୍ଗରେ ଉତ୍କଳର ବିଭିନ୍ନ ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟ କବିଙ୍କ ଲେଖନୀରେ ପ୍ରକାଶିତ ହୋଇଅଛି । ନନ୍ଦିକେଶ୍ୱରୀ କାବ୍ୟରେ ଉତ୍କଳର ବିଭିନ୍ନ ସ୍ଥାନରୁ ଯୁଦ୍ଧ କରିବା ନିମନ୍ତେ ସୈନ୍ୟମାନେ ଆସିଥିବାର ବର୍ଣ୍ଣନା ଦିଆ ଯାଇଅଛି । ଏହି ପ୍ରସଙ୍ଗରେ କବି ସମଗ୍ର ଉତ୍କଳର ପ୍ରାକୃତିକ ଦୃଶ୍ୟ ଓ ସ୍ଥାନଗତ ବୈଶିଷ୍ଟ୍ୟ ବର୍ଣ୍ଣନା କରି ନିଜର ପ୍ରକୃତି-ପ୍ରେମିକତାର ପରିଚୟ ପ୍ରଦାନ କରିଅଛନ୍ତି । ଉଷା କାବ୍ୟରେ କବି ପ୍ରସଙ୍ଗୋଚିତ ଭାବରେ ପ୍ରକୃତି ବର୍ଣ୍ଣନାର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଅଛନ୍ତି । ଉଷାଙ୍କ ଶିକାର ସମୟରେ ଅରଣ୍ୟ ପ୍ରକୃତିର ଦୃଶ୍ୟର ଚମତ୍କାରିତା ଲକ୍ଷ୍ୟ କରିବାର କଥା । ପୁଣି ଉଷାଙ୍କ ସ୍ୱୟଂବର ପାଇଁ ବିଭିନ୍ନ ସ୍ଥାନରୁ

ଆସିଥିବା ରାଜକୁମାରମାନଙ୍କ ବର୍ଣ୍ଣନା ଦିଆଯାଇଅଛି । ଏହି ପ୍ରସଙ୍ଗରେ ଯେଉଁରାଜ୍ୟରୁ ରାଜକୁମାରମାନେ ଆସିଥିଲେ ସେ ରାଜ୍ୟର ପ୍ରାକୃତିକ ଦୃଶ୍ୟ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଅଛି । ପାର୍ବତୀକାବ୍ୟରେ କବି ଦୋଳମହୋତ୍ସବ ଉପଲକ୍ଷେ ସୁନ୍ଦର ପ୍ରକୃତି ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ ମୟୂରଭଞ୍ଜର ପ୍ରାକୃତିକ ଦୃଶ୍ୟ ଦେଇଅଛନ୍ତି । ମାତ୍ର ମୟୂରଭଞ୍ଜରୁ ବିଜୟୀବାର୍ତ୍ତା ଅଗ୍ନି-ସନ୍ଦେଶ ଦ୍ୱାରା ଆସିବାବେଳେ ପଥ ମଧ୍ୟରେ ଯେଉଁ ଯେଉଁ ସ୍ଥାନଦେଇ ଅଗ୍ନିସନ୍ଦେଶ ଆସିଥିଲା ସେ ସ୍ଥାନଗୁଡ଼ିକର ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା ମନୋରମ ହୋଇଅଛି ।

ଚିଲିକା କାବ୍ୟରେ କବି ଚିଲିକାର ସୌନ୍ଦର୍ଯ୍ୟ ଓ ଚିଲିକାର ତୀରବର୍ତ୍ତୀ ପ୍ରଦେଶର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି ନିଜର ପ୍ରକୃତି ପ୍ରେମିକତାର ପରିଚୟ ପ୍ରଦାନ କରିଅଛନ୍ତି । ଶରତ୍‌କାଳୀନ ସଂଧ୍ୟାରେ ଚିଲିକାତୀରର ପ୍ରାକୃତିକ ଦୃଶ୍ୟ କବିଙ୍କ ଲେଖନୀରେ ଅମରତ୍ୱ ଲାଭ କରିଅଛି । ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରକୃତିର ବୈଶିଷ୍ଟ୍ୟ ଏହି ଚିଲିକାକାବ୍ୟରୁ ହିଁ ସୂଚିତ । ଚିଲିକାର ପ୍ରକୃତି କେବଳ ଚିତ୍ରପଟ ନୁହେଁ । ଏଠାରେ ପ୍ରକୃତି ସତେ ଯେପରି ଜୀବନ୍ତ । ମନୁଷ୍ୟର ସୁଖ ଦୁଃଖରେ ପ୍ରକୃତି ଏଠାରେ ସମଭାଗୀ । ତେଣୁ କବିବର ରାଧାନାଥ ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରକୃତିକୁ ପ୍ରାଣପ୍ରାଚୁର୍ଯ୍ୟରେ ପୂର୍ଣ୍ଣ କରିଅଛନ୍ତି । ପ୍ରକୃତିର ଅପୂର୍ବ ଆତ୍ମପ୍ରକାଶ କେବଳ ରାଧାନାଥଙ୍କ ଲେଖନୀରେ ସମ୍ଭବପର ହୋଇଥିଲା । କବିବର ରାଧାନାଥ କାବ୍ୟର ପ୍ରସଙ୍ଗ ଅନୁରୋଧରେ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ଚନ୍ଦ୍ରୋଦୟ ବା ଗ୍ରୀଷ୍ମ, ବର୍ଷା ପ୍ରଭୃତିର ବର୍ଣ୍ଣନା ଦେଇ ପ୍ରକୃତିକୁ ଚିତ୍ରପଟ ଭଳି ପ୍ରଦର୍ଶନ କରିନାହାନ୍ତି ।

ପ୍ରକୃତିକୁ ପ୍ରାଣପ୍ରାଚୁର୍ଯ୍ୟରେ ପୂର୍ଣ୍ଣ କରି କାବ୍ୟର କଳେବର ମଧ୍ୟରେ ତାକୁ ଉପସ୍ଥାପନ କରି ସେ ନିଜର ବିଶିଷ୍ଟ ଚିନ୍ତାଧାରାର ପରିଚୟ ପ୍ରଦାନ କରି ଅଛନ୍ତି । ଉତ୍କଳର ପ୍ରକୃତି କବିଙ୍କ ଚକ୍ଷୁରେ ଅନୁପମ । ଉତ୍କଳ ପ୍ରକୃତିର ସୌନ୍ଦର୍ଯ୍ୟ ମର୍ତ୍ତ୍ୟରେ ଅନ୍ୟତ୍ର ଅସମ୍ଭବ, କେବଳ ସ୍ୱର୍ଗରେ ଥିଲେ ଥାଇପାରେ ।

କେବଳ ଉତ୍କଳର ପ୍ରକୃତି ନୁହେଁ ଭାରତର ଅନ୍ୟାନ୍ୟ ସ୍ଥାନର ପ୍ରକୃତି ଚିଲିକା ଓ ମହାଯାତ୍ରାରେ ବର୍ଣ୍ଣିତ ହୋଇଅଛି । ସେ ବର୍ଣ୍ଣନା ଏକାବେଳେକେ ଜୀବନ୍ତ । ମାତ୍ର ରାଧାନାଥଙ୍କର ସ୍ୱଦେଶ ପ୍ରେମ ଏତେ ଉଚ୍ଚ ଯେ ଜନ୍ମଭୂମିର ସୌନ୍ଦର୍ଯ୍ୟ ତାଙ୍କୁ ସବୁଠାରୁ ବଡ଼ ବୋଲି ଜଣାଯାଇଅଛି । ଚିଲିକାର ପଶ୍ଚିମ ତୀରରେ କବି ତାଙ୍କର ଶେଷଜୀବନ ଅତିବାହିତ କରିବା ଇଚ୍ଛା ପୋଷଣ କରି ଯେଉଁ କେତେକ କଥା ବର୍ଣ୍ଣନା କରିଅଛନ୍ତି ଯାହା ତାଙ୍କର ଅପୂର୍ବ ପ୍ରକୃତି-ପ୍ରେମିକତାର ଜ୍ୱଳନ୍ତ ଦୃଷ୍ଟାନ୍ତ ।

ପ୍ରକୃତିକୁ ଜୀବନ୍ତ କରି ବର୍ଣ୍ଣନା କରିବାରେ ରାଧାନାଥ ହିଁ ଅଗ୍ରଣୀ । ରକ୍ତବାହୁ ଆକ୍ରମଣର ପ୍ରତିଶୋଧ କେବଳ ପ୍ରକୃତି ନେଇ ପାରିଛି । ପ୍ରକୃତିର ଉଦ୍ଦାମ ତାଣ୍ଡବଲୀଳା ସେଠାରେ ଅତ୍ୟନ୍ତ ଭୟଙ୍କର ରୂପ ଗ୍ରହଣ କରିଅଛି ।

ରାଧାନାଥଙ୍କ ରଚନାରେ ପ୍ରକୃତି କେଉଁଠାରେ ଶାନ୍ତ କୋମଳ, କେଉଁଠାରେ ଶ୍ୟାମ ଓ ପୁଣି କେଉଁଠାରେ ଗମ୍ଭୀର । ତେଣୁ ପ୍ରକୃତିର ରୁଦ୍ର ସୁନ୍ଦର ମୂର୍ତ୍ତି ରାଧାନାଥଙ୍କ ରଚନାକୁ ସାବଲୀଳ କରିଅଛି ।

## ( ୯ ) ରାଧାନାଥଙ୍କର ସ୍ୱଦେଶ ପ୍ରୀତି—

କବିବର ରାଧାନାଥଙ୍କର ଜୀବନର ଯେ କୌଣସି ପର୍ଯ୍ୟାୟରେ ତାଙ୍କର ଦେଶପ୍ରେମର ଉଜ୍ଜ୍ୱଳ ଆଦର୍ଶ ଦେଖିବାକୁ ମିଳେ । ବାଲ୍ୟକାଳରୁ ପିତାଙ୍କ ଆଦର୍ଶରେ ପ୍ରଭାବିତ ରାଧାନାଥ ନିଜ ଦେଶକୁ ଶ୍ରଦ୍ଧାକରିବାକୁ ଶିଖିଥିଲେ । ତାଙ୍କର ପରବର୍ତ୍ତୀ ଜୀବନରେ ସେ ଯେତେବେଳେ କାବ୍ୟ କବିତା ସୃଷ୍ଟି କରିଥିଲେ ସେତେବେଳେ ତାଙ୍କର ସ୍ୱଦେଶପ୍ରୀତି ପ୍ରତ୍ୟେକ କ୍ଷେତ୍ରରେ ଦେଖା ଦେଇଥିଲା । ରାଧାନାଥଙ୍କୁ ଅନେକ ସମାଲୋଚକ ବିଜାତୀୟ ମନୋବୃତ୍ତିର କବିରୂପେ ଆକ୍ଷେପ କରିଥିଲେ ହେଁ ତାଙ୍କର ସୃଷ୍ଟିସମ୍ଭାରରୁ ତାଙ୍କର ସ୍ୱଦେଶ ପ୍ରୀତିର ଅପୂର୍ବ ଉଦାହରଣ ମିଳିଅଛି । ରାଧାନାଥଙ୍କ ବିରୁଦ୍ଧରେ ଯେତେ ଯେତେ ନିନ୍ଦା ବା କୁତ୍ସାରଟନା କରାଯାଇଥିଲା ତାହା ଏକାଧିକ କାରଣର ଫଳ ରୂପେ ପ୍ରମାଣିତ ହୋଇଅଛି ।

କବିବର ରାଧାନାଥ "ଶିବାଜୀଙ୍କ ଉତ୍ସାହବାଣୀ" କବିତାରେ ତାଙ୍କର ଦେଶାତ୍ମବୋଧ ଭାବଧାରାର ପରିଚୟ ଦେଇଥିଲେ । ବିଦେଶୀ ଯବନ ଏ ଦେଶକୁ ଅଧିକାର କଲେ ଏ ଦେଶବାସୀ ହିନ୍ଦୁମାନଙ୍କର ଅବସ୍ଥା କିପରି ଶୋଚନୀୟ ହେବ ସେ କଥା ସେ ଶିବାଜୀଙ୍କ ମୁଖରେ ସୈନ୍ୟମାନଙ୍କୁ ଶୁଣାଇ ଦେଶବାସୀଙ୍କୁ ଜାଗ୍ରତ ହେବା ପାଇଁ ଉଦ୍‌ବୋଧନ ଦେଇଥିଲେ । ଏହି କବିତାଟି ଲିଖିତ ହେବା ସଙ୍ଗେ ସଙ୍ଗେ ଏ ଦେଶର କୌଣସି ପରଶ୍ରୀକାତର ବ୍ୟକ୍ତି ଇଂରେଜ ସରକାରଙ୍କୁ ଜଣାଇ ଦେଲେ ଯେ ରାଧାନାଥ ପରୋକ୍ଷ ଭାବରେ ଇଂରେଜମାନଙ୍କୁ ଏ ଦେଶରୁ ତଡ଼ିବା ପାଇଁ ଉଦ୍‌ବୋଧନ ଦେଇ କବିତା ଲେଖିଅଛନ୍ତି । କେବଳ "ଶିବାଜୀଙ୍କ ଉତ୍ସାହ ବାଣୀ ନୁହେଁ" ମହାଯାତ୍ରାରେ କବି ଅମର୍ଷିଙ୍କ ମୁଖରୁ ଯେଉଁ

ଉଦ୍‌ବୋଧନ ବାଣୀ ଶୁଣାଇଥିଲେ ତାହା ବିରୁଦ୍ଧରେ ମଧ୍ୟ ଏହି ପ୍ରକାର କାର୍ଯ୍ୟାନୁଷ୍ଠାନ ହୋଇଥିଲା । ରାଧାନାଥ ଏଥିରେ ନିତାନ୍ତ କ୍ଷୁବ୍ଧ ହୋଇ ଶିବାଜୀଙ୍କ ଉତ୍ସାହବାଣୀ ଓ ଅମର୍ଷବାଣୀକୁ ତାଙ୍କ ଗ୍ରନ୍ଥାବଳୀରେ ସ୍ଥାନ ଦେଇ ନ ଥିଲେ ଏବଂ ଏହି କାରଣରୁ ମହାଯାତ୍ରା ଭଳି ଆଧୁନିକ ଓଡ଼ିଆ ସାହିତ୍ୟର ମହାକାବ୍ୟ ଅସଂପୂର୍ଣ୍ଣ ରହିଗଲା ।

କବିଙ୍କର ପ୍ରକୃତି-ପ୍ରେମିକତା ଅନ୍ୟପକ୍ଷରେ ସ୍ୱଦେଶ ପ୍ରୀତିର ପରିପୂରକ । ତାଙ୍କ ରଚନାରେ ସମଗ୍ର ଓଡ଼ିଶା ଓ ଭାରତର ଅନେକ ସ୍ଥାନର ପ୍ରକୃତିର ବର୍ଣ୍ଣନାକୁ ଲକ୍ଷ୍ୟ କରିବାର କଥା । ତାଙ୍କର ଚିଲିକା କାବ୍ୟ ପ୍ରକୃତି ଉପରେ ପ୍ରତିଷ୍ଠିତ । ଏହି କାବ୍ୟରେ କବିଙ୍କର ସ୍ୱଦେଶ ପ୍ରୀତିର ଅପୂର୍ବ ଉଦାହରଣ ଦେଖା ଦେଇଅଛି । ଚିଲିକା ଭଳି ଗୋଟିଏ ହ୍ରଦକୁ କେନ୍ଦ୍ର କରି କବି ନିଜର ମନୋଭାବକୁ ସ୍ପଷ୍ଟତର ଭାବରେ ପ୍ରକାଶ କରିଅଛନ୍ତି । ସେ ଚିଲିକାକୁ ସମଗ୍ର ଭାରତରେ ପ୍ରାକୃତିକ ସୌନ୍ଦର୍ଯ୍ୟର ଶ୍ରେଷ୍ଠତମ ଆଧାର ରୂପେ ବର୍ଣ୍ଣନା କରିଅଛନ୍ତି । ଉତ୍କଳରେ ପ୍ରାକୃତିକ ଦୃଶ୍ୟ ବା ସୌନ୍ଦର୍ଯ୍ୟ ବା ସମ୍ପଦର ଅଭାବ ନଥିଲେହେଁ ଏହିସବୁ ପ୍ରାକୃତିକ ସମ୍ପଦ ଭାରତର ଲୋକଲୋଚନର ଗୋଚରକୁ ଆସିପାରି ନଥିବାରୁ କବି ଖେଦ ପ୍ରକାଶ କରିଅଛନ୍ତି । ଉତ୍କଳରେ କବି ବା ସ୍ରଷ୍ଟାଙ୍କର ଅଭାବ ଏହାର ପ୍ରଧାନ କାରଣ । ଏହି ଅଭାବର ଦୂରୀକରଣ ଲାଗି ସେ ବୀଣାପାଣିଙ୍କ ନିକଟରେ ପ୍ରାର୍ଥନା କରିଅଛନ୍ତି । ଚିଲିକା ହ୍ରଦକୁ ସମଗ୍ର ଭାରତବର୍ଷର ପ୍ରାକୃତିକ ସମ୍ପଦ ଭିତରେ ସର୍ବଶ୍ରେଷ୍ଠ ଆସନ ଦେବାର ଅର୍ଥ ହେଲା ଉତ୍କଳର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ।

ଏ ପ୍ରସଙ୍ଗରେ ଗୋଟିଏ କଥା ଏଠାରେ ଉଲ୍ଲେଖ କରାଯାଇ ପାରେ । କବିବର ରାଧାନାଥ ୧୮୯୦ ସାଲରେ ପାର୍ବତୀ କାବ୍ୟ ରଚନା କରିଥିଲେ । ପାର୍ବତୀ କାବ୍ୟକୁ ପାଠକରି ଏ ଦେଶର ପାଠକଗଣ ରାଧାନାଥଙ୍କ ମନୋବୃତ୍ତିକୁ ସମର୍ଥନ କରି ନ ଥିଲେ । ରାଧାନାଥ-ବିରୋଧୀ ସାହିତ୍ୟ ସମୀକ୍ଷକଗଣ ରାଧାନାଥଙ୍କର ଏହି କାବ୍ୟରେ ବର୍ଣ୍ଣିତ ପିତା ଓ କନ୍ୟାର ପ୍ରଣୟ କାହାଣୀ ପାଠକରି ତାହାଙ୍କୁ ବିଜାତୀୟ ମନୋବୃତ୍ତିର ଲୋକ ବୋଲି ପ୍ରଚାର କଲେ । ଓଡ଼ିଶାର ରାଜବଂଶ ନାମରେ ଏପରି ଏକ ଅପକୀର୍ତ୍ତିର ପ୍ରଚାର ରାଧାନାଥଙ୍କର ବିଜାତୀୟ ମନୋବୃତ୍ତି ବୋଲି ତାଙ୍କ ବିରୁଦ୍ଧରେ ନିନ୍ଦା ରଚିତ ହେଲା । ରାଧାନାଥ ଏହି ନିନ୍ଦା ରଟନାକାରୀମାନଙ୍କ ଅଜ୍ଞତାରେ କ୍ଷୁଣ୍ଣ ହେଲେ । କାରଣ ପାର୍ବତୀ କାବ୍ୟର କଥାବସ୍ତୁ ଓଡ଼ିଶାର ରାଜବଂଶର କାହାଣୀ ନୁହେଁ । ଏହି କଥାବସ୍ତୁରେ ରାଧାନାଥଙ୍କର ଆହରଣ-ସୂତ୍ର ବିଷୟରେ ଓଡ଼ିଶାର ପାଠକ ସମାଜ ଅଜ୍ଞ ଥିଲେ । ରାଧାନାଥଙ୍କୁ ଜାତୀୟ-ବିରୋଧୀ ଦୋଷୀ ସାବ୍ୟସ୍ତ କରାଯିବାରୁ ରାଧାନାଥ ୧୮୯୧ ସାଲରେ ଚିଲିକା କାବ୍ୟ ଜରିଆରେ ଏ ଜାତିକୁ ତାଙ୍କର ଉତ୍ତର ଜଣାଇଥିଲେ । ଚିଲିକା କାବ୍ୟରେ ସେ ପ୍ରମାଣ କରିବାକୁ ଚେଷ୍ଟାକଲେ ଯେ ତାଙ୍କର ମନୋବୃତ୍ତି ଜାତୀୟ ବିରୋଧୀ ନୁହେଁ । ଏ ଦେଶ ପ୍ରତି ତାଙ୍କର ଗଭୀର ମମତା ଅଛି ଏବଂ ଏ ଦେଶର ପ୍ରଶଂସା ଗାନ କରିବାରେ ସେ ଶତମୁଖ । ଉତ୍କଳର ପ୍ରାଧାନ୍ୟ ପ୍ରଦର୍ଶନ କରି ପାରିବାପରେ ସେ ମହାଯାତ୍ରାରେ ଉତ୍କଳ ତଥା ଭାରତର ପ୍ରାଧାନ୍ୟ ବିଷୟରେ ବର୍ଣ୍ଣନା କରି ନିଜର ମହାଭାରତୀୟ-ପ୍ରୀତି ଭାବ ପ୍ରଚାର କରିବାକୁ ଚେଷ୍ଟା କରିଥିଲେ । ମାତ୍ର ମହାଯାତ୍ରା ଏ ଦେଶବାସୀଙ୍କ ଦୋଷରୁ ଅସମାପ୍ତ ରହିଗଲା ।

ଜନ୍ମଭୂମିର ଜୟଗାନ କରିବା ତାଙ୍କର ଥିଲା ମୁଖ୍ୟ ଉଦ୍ଦେଶ୍ୟ । ଜନ୍ମଭୂମିର ପ୍ରାଧାନ୍ୟ ପ୍ରଚୁର ଅଭାବରୁ ପ୍ରକାଶ ପାଇନାହିଁ । ସେଥିପାଇଁ ସେ ଉତ୍କଳର ନଦନଦୀ, ହ୍ରଦ ଓ ପର୍ବତମାଳାର ପ୍ରାଧାନ୍ୟ ପ୍ରଦର୍ଶନ କରିବାକୁ ଯାଇ ଭାରତରେ ପ୍ରାଧାନ୍ୟ ଲାଭ କରିଥିବା ନଦନଦୀ, ହ୍ରଦ ଓ ପର୍ବତ ସହିତ ତୁଳନାତ୍ମକ ବର୍ଣ୍ଣନା ପ୍ରଦାନ କରି ଅଛନ୍ତି । ଚିଲିକା କାବ୍ୟରେ ସେ ଲେଖିଛନ୍ତି—

"କ୍ଷୁଦ୍ର କ୍ଷିପ୍ରା ସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ ।
ସୁରୂପା ଅଂଶୁପା ଲୋକେ ଅଗୋଚର
ପୂଜ୍ୟାସ୍ପଦ ହେଲା ଗୋଷ୍ପଦ-ପୁଷ୍କର ।"

"ଖର୍ବ ଗୋବର୍ଦ୍ଧନ ଗିରୀନ୍ଦ୍ର ବୋଲାଏ
ମହାତୀର୍ଥ ରୂପେ ଲୋକେ ପୂଜାପାଏ ।
ସ୍ୱଭାବେ ଗିରୀନ୍ଦ୍ର ହୋଇ ମେଘାସନ
ଲଭିନାହିଁ ଗିରି-ସମାଜେ ଆସନ ।"

ଏହି ଖେଦୋକ୍ତି ଭିତରେ ରାଧାନାଥଙ୍କର ମର୍ମବେଦନା ତାଙ୍କର ଦେଶପ୍ରୀତିର ଏକ ନିର୍ଭୁଲ ଧାରଣା ଦେଇଥାଏ । ମହାଯାତ୍ରାରେ କବି ଦେଶପ୍ରୀତିର ଯେଉଁ ଅମର ନିଦର୍ଶନ ରଖିଯାଇଛନ୍ତି ତାହାର ପଟାନ୍ତର ନାହିଁ । ମହାଯାତ୍ରାରେ ଉତ୍କଳର ତୀର୍ଥମାନଙ୍କର ବର୍ଣ୍ଣନା କବିଙ୍କ ଲେଖନୀର ପରାକାଷ୍ଠା ପ୍ରଦର୍ଶନ କରିଅଛି । ଭାରତର ଅତୀତ ଗୌରବର ସ୍ମୃତି ତାଙ୍କ ରଚନାରେ ସ୍ପଷ୍ଟ ଭାବରେ ପ୍ରକାଶ ପାଇଅଛି । କେବଳ ଅତୀତର ସ୍ମୃତିଚାରଣରେ ତାଙ୍କ ଲେଖନୀ ଆବଦ୍ଧ ହୋଇ ରହିନାହିଁ, ଭବିଷ୍ୟତର ଉଜ୍ଜ୍ୱଳତର

ସ୍ୱପ୍ନର ଚିତ୍ର ମଧ୍ୟ ଅଙ୍କନ କରିବାରେ ସମର୍ଥ ହୋଇଅଛି । ଚିଲିକା କାବ୍ୟର ଉପସଂହାରରେ ସେ ଲେଖିଛନ୍ତି—

"ପାହିଲାଣି ଘୋର ତାମସୀ ଯାମିନୀ
ଫୁଟିବ ଉତ୍କଳ ଭାଷା-କମଳିନୀ ।"

ଉତ୍କଳର ଭବିଷ୍ୟତ ଉନ୍ନତି ପାଇଁ କବିଙ୍କର ଏହି ଆଶା-ପ୍ରକାଶ ତାଙ୍କ ଜାତୀୟ ଚେତନାର ଏକ ଉଦାହରଣ । ଦେଶର ସ୍ୱାଧୀନତା ଲୁପ୍ତ ହେଲେ କି ବିପର୍ଯ୍ୟସ୍ତ ଅବସ୍ଥା ଉପୁଜିବ, ଏବଂ ପରାଧୀନତା କିପରି ଅସହ୍ୟ ସେ ବିଷୟରେ କବି ଲେଖିଛନ୍ତି—

"ଦିଗ୍‌ବିଜୟୀ ଆର୍ଯ୍ୟସିଂହ ଔରସେ ଜନମି,
ହେଲକି ଅକ୍ଷମ ଅହୋ ! ନିଜସ୍ୱ ରକ୍ଷଣେ ?
ହିମ ଉର୍ଦ୍ଧ୍ୱସ୍ଥିତ ଭୀମ ହିମାଦ୍ରି-ପ୍ରାଚୀରେ
ଦୁର୍ଗମ ଭାରତ ଦୁର୍ଗ କାପୁରୁଷ ହାତେ,
କେ କହିବ କିମ୍ପା ମୋତେ ଅର୍ପିଲେ ବିଧାତା ?
ହା ଦୈବ ! ଜମ୍ବୁକ ପଶି ହର୍ଯ୍ୟକ୍ଷ ଗୁହାରେ
ଗୋଇଠା ପ୍ରହାରି ନେବ ତା ମୁଖୁଁ ଉଦ୍ଧାରି
ଗ୍ରାସ ତାର, ହର୍ଯ୍ୟକ୍ଷ ତା ସହିବ ମଉନେ
ଏ ଲାଞ୍ଛନା ଥିଲାଟିକି ଆର୍ଯ୍ୟର ଲଲାଟେ !"

ଉତ୍କଳର ଗୌରବ ପ୍ରକାଶ କରିବାକୁ ଯାଇ କବି ନନ୍ଦିକେଶ୍ୱରୀ କାବ୍ୟରେ ଲେଖିଛନ୍ତି—

"ଯା'ର କୀର୍ତ୍ତିରାଜି ଅମର ସାକ୍ଷିଣୀ
ନାଚୁଛନ୍ତି ପଦେ ପଦେ ତରଙ୍ଗିଣୀ,

ଏକାମ୍ରେ ଯାହାର ଅସଂଖ୍ୟ ଦେଉଳ
ଧ୍ୱଜେ ଯଶୋରାଶି ହେଲା ଯାର ଠୁଳ,
ଯାର କୀର୍ତ୍ତିମାଳା ଏକ୍ଷୁ ପୂତଜଳା
କାଠଯୋଡ଼ି-ରୋଧ ନିତମ୍ବେ ମେଖଳା ।"

ପୁଣି ମହାଯାତ୍ରାରେ ଉତ୍କଳର ଶ୍ରେଷ୍ଠତ୍ୱ ପ୍ରଦର୍ଶନ କରିବାପାଇଁ ଅଗ୍ନିଦେବଙ୍କ ମୁଖରେ କବି ପ୍ରକାଶ କରାଇଛନ୍ତି—

"ପଞ୍ଚ ଦଳେ ଶ୍ରେଷ୍ଠ ଯେହ୍ନେ ପ୍ରସୂନ ଜଳଜ
ଶ୍ରେଷ୍ଠ ଏ ଉତ୍କଳ ଭୂମି ଗୁଣେ ଗରୀୟସୀ,
ଯାମ୍ୟେ ଯାର ଋଷିକୁଲ୍ୟା, କପିଶା ଉତ୍ତରେ,
ପଶ୍ଚିମେ ଭାର୍ଗବାଶ୍ରମ ମହେନ୍ଦ୍ର ଶିଖରୀ" ।

କବିଙ୍କ ଚକ୍ଷୁରେ ନିଜର ଜନ୍ମଭୂମିଠାରୁ ଅଧିକ ପବିତ୍ର ସ୍ଥାନ ଆଉ କିଛି ନାହିଁ । ଉତ୍କଳର ପବିତ୍ରତା ପ୍ରତିପାଦନ ପାଇଁ ସେ ଯଯାତି କେଶରୀରେ ଲେଖିଛନ୍ତି :—

"ପୁଣ୍ୟ ଭୂମି ନୋହି ଥିଲେ କି ଏ ବାଳା
ଜନମିଥାନ୍ତା ଉତ୍କଳେ
ତ୍ରିଦଶ ଗାମିନୀ ସୌଦାମିନୀ କେବେ
ସ୍ଫୁରେ କି ବସୁଧା ତଳେ ?"

ନିଜର ଜନ୍ମଭୂମି ଓ ଦେଶ କବିଙ୍କ ଦୃଷ୍ଟିରେ କିପରି ମହାନ୍ ତାହା ସେ ଶିବାଜୀଙ୍କର ଉତ୍ସାହ ବାକ୍ୟରେ ପ୍ରକାଶ କରିଅଛନ୍ତି ।

"ଏ ଭାରତ ଭୂମି ଆମ୍ଭର ଜନନୀ
ପୁଣ୍ୟଭୂମି ନାହିଁ ସରି ଏହାର
ଅମୂଲ୍ୟ ଦୁର୍ଲଭ ରତନର ଖଣି
ସବୁଦେଶ ମଧ୍ୟେ ଏ ଦେଶ ସାର ।"

କବିଙ୍କର ସ୍ୱଦେଶ ପ୍ରୀତି ବା ସ୍ୱଦେଶ ବତ୍ସଳତା ବିଷୟରେ ବିଚାର କରିବା ସମୟରେ କବିଙ୍କର ଉଦାର ମନୋବୃତ୍ତିର ଯଥେଷ୍ଟ ପରିଚୟ ମିଳେ । ତାଙ୍କର କାବ୍ୟ କବିତାଗୁଡ଼ିକରେ ଯେଉଁ ସ୍ଥାନରେ ଦେଶପ୍ରୀତିର ପରିଚୟ ମିଳେ ତାହା ସଂକୀର୍ଣ୍ଣତାର ସୀମା ମଧ୍ୟରେ ଆବଦ୍ଧ ନୁହେଁ । କବିବର ରାଧାନାଥଙ୍କର ଉଦାର ମନୋଭାବ ତାଙ୍କୁ ଅମର କରି ରଖିଅଛି ଓ ରଖିଥିବ ମଧ୍ୟ । କବିଙ୍କର ଦେଶପ୍ରୀତିର ଅମର ନିଦର୍ଶନ ଭାରତ ଗୀତିକା । ଏହି ଭାରତଗୀତିକାର ପ୍ରଥମ ପଦ ହିଁ କବିଚରିତ୍ରର ପରିଚୟ ଦେଇ ଅଛି ।

"ସର୍ବେଷାଂ ନୋ ଜନନୀ ଭାରତ
ଧରଣୀ କଳ୍ପଲତେୟଂ,
ଜନନୀ-ବତ୍ସଳ ତନୟ ଗଣୈସ୍ତତ୍—
ସମ୍ୟକ୍ ଶର୍ମ୍ମ ବିଧେୟଂ ।"

## ( ୧୦ ) ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କ ସ୍ଥାନ :—

ଆଧୁନିକ ଓଡ଼ିଆ ସାହିତ୍ୟରେ ଯୁଗସ୍ରଷ୍ଟା କବିବର ରାଧାନାଥଙ୍କ ସ୍ଥାନ ସୁବିଦିତ । ମଧ୍ୟଯୁଗୀୟ ପରମ୍ପରାରୁ ଓଡ଼ିଆ ସାହିତ୍ୟକୁ ମୁକ୍ତ କରି ଏକ ନୂତନ ରୂପରେ ଓଡ଼ିଆ କବିତାକୁ ରାଧାନାଥ ହିଁ ପ୍ରଥମେ ପ୍ରକାଶ କଲେ । ଆଧୁନିକ ଶିକ୍ଷାଦାନ ପଦ୍ଧତିରେ ଶିକ୍ଷିତ ରାଧାନାଥ ଆଧୁନିକ ଶିକ୍ଷିତ ଗୋଷ୍ଠୀକୁ ଆଖି ଆଗରେ ରଖି ତାଙ୍କର ସାହିତ୍ୟ ସୃଷ୍ଟି ଆରମ୍ଭ କରିଥିଲେ । ଆଧୁନିକ ଶିକ୍ଷିତ ବ୍ୟକ୍ତିମାନେ ରାଧାନାଥଙ୍କ ସାହିତ୍ୟକୁ ଗ୍ରହଣ କରିନେଇ ତାର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ମାତ୍ର ସମାଜରେ

ସେତେବେଳେ କେବଳ ଆଧୁନିକ ଶିକ୍ଷିତ ଗୋଷ୍ଠୀ ତ ନଥିଲେ । ଯେଉଁମାନେ ପ୍ରାଚୀନ ପରମ୍ପରାରେ ବିଶ୍ୱାସ କରୁଥିଲେ, ଯେଉଁମାନେ ଆଧୁନିକତାକୁ ସର୍ବାନ୍ତକରଣରେ ଗ୍ରହଣ କରିନେବାକୁ ଉଚିତ ମନେକରୁ ନ ଥିଲେ ସେହିମାନେ ଆଧୁନିକ ସାହିତ୍ୟ ବିପକ୍ଷରେ ମତପ୍ରଦାନ କରିଥିଲେ । ତେଣୁ ରାଧାନାଥ ଓ ଉପେନ୍ଦ୍ରଭଞ୍ଜଙ୍କୁ କେନ୍ଦ୍ର କରି ଆଧୁନିକ ଯୁଗରେ ଏକ ବିସମ୍ବାଦ ଜାତ ହୋଇଥିଲା । ଦୁଇଟି ଦଳରେ ବିଭକ୍ତ ହୋଇ ଓଡ଼ିଆ ସାହିତ୍ୟପ୍ରେମୀମାନେ ସେତେବେଳେ ଯେଉଁପ୍ରକାର ଅଶୋଭନୀୟ କାଣ୍ଡ ସୃଷ୍ଟି କରିଥିଲେ ତାହା ଏକ ହୀନ ରୁଚିର ପରିଚୟ ପ୍ରଦାନ କରିଥିଲା । ସେ ଯାହା ହେଉନା କାହିଁକି, ଆଧୁନିକତାର ପ୍ରସାର ସଙ୍ଗେ ସଙ୍ଗେ ଆଧୁନିକ ଓଡ଼ିଆ ସାହିତ୍ୟ ପ୍ରତିଷ୍ଠିତ ହେବାର ଗୌରବ ଅର୍ଜନ କରିଥିଲା ।

ରାଧାନାଥଙ୍କର କାବ୍ୟରଚନାର ମୂଳକଥା ନ ଜାଣି ଯେଉଁମାନେ ରାଧାନାଥଙ୍କର ନିନ୍ଦାଗାନ କରିଥିଲେ ସେମାନଙ୍କର ଅପଚେଷ୍ଟା ସତ୍ତ୍ୱେ ରାଧାନାଥ-ସାହିତ୍ୟ ପ୍ରତିଷ୍ଠା ଅର୍ଜନ କରିଅଛି । ରାଧାନାଥ ତାଙ୍କର କାବ୍ୟଗୁଡ଼ିକର କଥାବସ୍ତୁରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରାର ଅପୂର୍ବ ସମନ୍ୱୟ ସମ୍ପାଦନ କରିଛନ୍ତି । ଏହି ସମନ୍ୱୟ ସଂପାଦନ ରାଧାନାଥଙ୍କର ଏକ ଯାଦୁକରୀ ଶକ୍ତି ପରି ଦେଖା ଦେଇଅଛି ।

ବହୁ ଭାଷାସାହିତ୍ୟରେ ରାଧାନାଥଙ୍କର ପାଣ୍ଡିତ୍ୟ ଥିଲା । ସେହି ପାଣ୍ଡିତ୍ୟବଳରେ ରାଧାନାଥ ଏକ ବିଶିଷ୍ଟ ସମ୍ମାନର ଯୋଗ୍ୟ । ସରକାରୀ କ୍ଷେତ୍ରରେ ଶିକ୍ଷାବିଭାଗରେ ଉଚ୍ଚତମ କର୍ମଚାରୀର ଆସନ ଗ୍ରହଣ କରି ରାଧାନାଥ ଏ ଦେଶର ଶିକ୍ଷାକ୍ଷେତ୍ରରେ ଯେଉଁ

ନୂତନ ରୂଚର ପ୍ରବର୍ତ୍ତନ କରିଥିଲେ ସେହି ରୂଚ ହିଁ ରାଧାନାଥଙ୍କୁ ଏ ଦେଶରେ ପ୍ରତିଷ୍ଠିତ ଆସନ ପ୍ରଦାନ କରିଅଛି । ତାଙ୍କର କାବ୍ୟକବିତାର ଲକ୍ଷ୍ୟ ସୁଦୂର ପ୍ରସାରୀ । ତାଙ୍କର ଆଦର୍ଶ ଏକ ମହାନ୍ ପରମ୍ପରାରେ ପରିଚାଳିତ ।

ରାଧାନାଥଙ୍କ ସମୟରେ ଆଧୁନିକ ଓଡ଼ିଆ ସାହିତ୍ୟର ନାଟକ, ଉପନ୍ୟାସ, କ୍ଷୁଦ୍ରଗଳ୍ପ ପ୍ରଭୃତିର ଯେଉଁ ଅଭ୍ୟୁଦୟ ହେଲା ସେଥିପାଇଁ ରାଧାନାଥଙ୍କର ଦାନ ଅସୀମ । ଏ କ୍ଷେତ୍ରରେ ରାଧାନାଥଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ କାର୍ଯ୍ୟ କରିଅଛି । ରାଧାନାଥଙ୍କ ପ୍ରେରଣାରେ ଏ ଦେଶରେ ବହୁ ଲେଖକ, କବି, ନାଟ୍ୟକାର ପ୍ରଭୃତି ସୃଷ୍ଟି ହୋଇ ଅଛନ୍ତି ।

ରାଧାନାଥ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ତାଙ୍କୁ ଯୁଗସ୍ରଷ୍ଟାର ଗୌରବ ଦିଆଯାଇଥାଏ । କାରଣ ଆଧୁନିକ ଓଡ଼ିଆ ସାହିତ୍ୟର ଯାହା କିଛି ନୂତନତ୍ୱ ବା ବୈଶିଷ୍ଟ୍ୟ ତାହାର ପ୍ରବର୍ତ୍ତକ ଥିଲେ ରାଧାନାଥ । ଆଧୁନିକ ଯୁଗର କବିମାନେ ତାଙ୍କର ଆଦର୍ଶରେ ପରିଚାଳିତ ହୋଇ ଅଛନ୍ତି । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କ ସ୍ଥାନ ନିରୂପଣ କରିବାକୁ ହେଲେ ତାଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟାର ଆସନ ଦିଆଯାଇଥାଏ ।



# ବ୍ୟାସକବି ଫକୀରମୋହନ

## (୧) ଫକୀରମୋହନଙ୍କ ସମସାମୟିକ ଓଡ଼ିଆ ସାହିତ୍ୟ—

ଭଞ୍ଜଯୁଗର ଅବସାନ ପରେ ଓଡ଼ିଆ ସାହିତ୍ୟରେ ରାଧାନାଥ ଯୁଗର ସୂତ୍ରପାତ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାଣ ପ୍ରତିଷ୍ଠାର ପ୍ରଥମ ପର୍ଯ୍ୟାୟ ରୂପେ ଦେଖା ଯାଇଥିଲା । କବିବର ରାଧାନାଥ ୧୮୬୪ ସାଲରୁ ୧୯୦୩ ସାଲ ପର୍ଯ୍ୟନ୍ତ ଦୀର୍ଘ ୪୦ ବର୍ଷକାଳ ଓଡ଼ିଶାର ଶିକ୍ଷାବିଭାଗ ସହିତ ସଂପୃକ୍ତ ଥାଇ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାଣ ପ୍ରତିଷ୍ଠା କରିବାରେ ବ୍ରତୀ ହୋଇଥିଲେ । ରାଧାନାଥ ରାୟଙ୍କର ଶିକ୍ଷା ଏଫ୍. ଏ. ପର୍ଯ୍ୟନ୍ତ ସୀମିତ ଥିଲେ ହେଁ ଜ୍ଞାନ ଏବଂ ପାଣ୍ଡିତ୍ୟ, ଇଂରାଜୀ ସାହିତ୍ୟ, ବଙ୍ଗଳା ସାହିତ୍ୟ, ହିନ୍ଦୀ ସାହିତ୍ୟ, ସଂସ୍କୃତ ଓ ପୁରାତନ ଓଡ଼ିଆ ସାହିତ୍ୟ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ବିଭିନ୍ନ ଭାଷା-ସାହିତ୍ୟରେ ପଣ୍ଡିତ ରାଧାନାଥ ଓଡ଼ିଆ ସାହିତ୍ୟକୁ ଯେଉଁ ବିପୁଳ ଦାନ କରିଛନ୍ତି, ତାହା ତାଙ୍କୁ ଏକ ଯୁଗସ୍ରଷ୍ଟାର ଆସନ ଦେଇଅଛି । କାବ୍ୟ ସୃଷ୍ଟି ପାଇଁ ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ କଥାବସ୍ତୁର ସମନ୍ୱୟ ସଂପାଦାନ କରି ଓଡ଼ିଆ ପାଠକ ଶ୍ରେଣୀ ଦ୍ୱାରା ଅତି ନିର୍ମମ ଭାବରେ ସମାଲୋଚିତ

ହୋଇଥିଲେ ହେଁ ବିଦେଶୀ ଗଳ୍ପର ଆଧାରକୁ ଏ ଦେଶର ପରମ୍ପରାରେ ସ୍ଥାପିତ କରିବାର ଅପୂର୍ବ କୌଶଳ ଯୋଗୁଁ ସେ ସମ୍ମାନାର୍ହ । ତାଙ୍କର ନନ୍ଦିକେଶ୍ୱରୀ, ଉଷା, ପାର୍ବତୀ, କେଦାର ଗୌରୀ, ଚନ୍ଦ୍ରଭାଗା ପ୍ରଭୃତି କାବ୍ୟରେ ବିଦେଶୀ କଥାବସ୍ତୁର ଆରୋପ ଯେପରି ହୋଇଅଛି ଚିଲିକା, ମହାଯାତ୍ରା, ତୁଳସୀସ୍ତବକ ଓ ମେଘଦୂତ ପ୍ରଭୃତିରେ ଭାରତୀୟ ଜୀବନର ଜାତୀୟତା ସେହିପରି ଖ୍ୟାତି ପାଇଅଛି । ପ୍ରକୃତିକୁ ଏକ ନୂତନ ବେଶରେ ମଣ୍ଡିତ କରିବା ହିଁ ରାଧାନାଥଙ୍କର ଅପ୍ରତିଦ୍ୱନ୍ଦ୍ୱୀ ଗୌରବ ।

ଏହି ଯୁଗର ଅନ୍ୟ ଏକ ପ୍ରଧାନ କବି ଭକ୍ତକବି ମଧୁସୂଦନଙ୍କ ଉପରେ ବ୍ୟକ୍ତିଗତ ଭାବରେ ବା ସାହିତ୍ୟିକ ଭାବରେ ରାଧାନାଥଙ୍କ ପ୍ରଭାବ ଯଥେଷ୍ଟ ଥିଲା । ମଧୁସୂଦନ କଟକରେ ଏଫ୍.ଏ. ପଢୁଥିବା ସମୟରେ ଦର୍ଶନଶାସ୍ତ୍ରର ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରଭାବରେ ଆସି ପ୍ୟାରୀମୋହନଙ୍କ ସହିତ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ । ଏହି ବ୍ରାହ୍ମଧର୍ମ ତାଙ୍କର ପରବର୍ତ୍ତୀ ସାହିତ୍ୟିକ ଜୀବନରେ ସାହିତ୍ୟ ସାଧନାକୁ ବହୁପରିମାଣରେ ନିୟନ୍ତ୍ରିତ କରିଥିଲା ।

ବ୍ରାହ୍ମବାଦୀ ମଧୁସୂଦନଙ୍କ ସାହିତ୍ୟରେ ମଧୁସୂଦନଙ୍କ ବ୍ୟକ୍ତିତ୍ୱ ଅତି ଉଜ୍ଜଳ ଭାବରେ ପରିସ୍ଫୁଟିତ । ତାଙ୍କର ସୀତା ବନବାସ, ଋଷିପ୍ରାଣେ ଦେବାବତରଣ ଓ ଜୀବନଚିନ୍ତା ପ୍ରଭୃତିରେ ତାଙ୍କ ମତବାଦ ପ୍ରମାଣିତ ହୋଇଅଛି । ଇଂରାଜୀ ଓ ସଂସ୍କୃତରୁ କେତେକ ଅନୁବାଦ ସେ କରିଥିଲେ ହେଁ ଆଧୁନିକ ଓଡ଼ିଆ ଗୀତିକବିତା ରାଜ୍ୟରେ ତାଙ୍କର ସୃଷ୍ଟିକୁ ଲକ୍ଷ୍ୟ କରିବାର କଥା । ଓଡ଼ିଆ ପ୍ରବନ୍ଧ-ସାହିତ୍ୟର ସେ ପ୍ରଥମ ପ୍ରବର୍ତ୍ତକ । ପ୍ରବନ୍ଧ, ନାଟକ,

କବିତା, ଯାହାକିଛି ସେ ସୃଷ୍ଟି କରିଛନ୍ତି ସେ ସବୁର ଅନ୍ତରାଳରେ ଋଷିପ୍ରାଣ ମଧୁସୂଦନଙ୍କର ଆନନ୍ଦମୟ ଭାବନାର ଚିନ୍ତାଧାରା ପ୍ରତ୍ୟେକ ସ୍ଥଳରେ ସାର୍ଥକ ଭାବରେ ରୂପାୟିତ ହୋଇଅଛି ।

ରାଧାନାଥ ଏବଂ ମଧୁସୂଦନଙ୍କୁ ଛାଡ଼ିଦେଲେ ଏ ଯୁଗରେ ଆଉ ଜଣେ ସାହିତ୍ୟରଥୀଙ୍କର ସାହିତ୍ୟ-ସାଧନା ପ୍ରଣିଧାନ-ଯୋଗ୍ୟ । ସେ ହେଉଛନ୍ତି ଔପନ୍ୟାସିକ ଓ ନାଟ୍ୟକାର ରାମଶଙ୍କର ରାୟ । ତାଙ୍କର ପ୍ରାଥମିକ ଜୀବନରେ ସେ କବିତା ରଚନାରେ ଯେଉଁ ଖ୍ୟାତି ଅର୍ଜନ କରିଛନ୍ତି, ତାହା ଅବିସ୍ମରଣୀୟ । ଓଡ଼ିଆ ସାହିତ୍ୟର ପ୍ରଥମ ନାଟ୍ୟକାର ରୂପେ ସେ ନିଜର ସ୍ଥାନ ଦାବୀ କରିଛନ୍ତି । ତାଙ୍କର ବିବାସିନୀ ଉପନ୍ୟାସରେ ତାଙ୍କ ପୂର୍ବରୁ ପ୍ରକାଶିତ ପଦ୍ମମାଳୀ ଉପନ୍ୟାସ ଅପେକ୍ଷା ଉପନ୍ୟାସର ଆଙ୍ଗୀକ ଶୈଳୀ ଅଧିକ ପ୍ରତିଷ୍ଠିତ ହୋଇଥିବାରୁ ବିବାସିନୀ ପଦ୍ମମାଳୀ ଅପେକ୍ଷା ବିଶେଷ ସୁନାମ ଅର୍ଜନ କରିଅଛି । କାଞ୍ଚିକାବେରୀ ନାଟକ ପୂର୍ବରୁ ବାବାଜୀ ନାଟକରେ ନାଟକୀୟ ଲକ୍ଷଣ ସାର୍ଥକ ଭାବରେ ପରିଦୃଷ୍ଟ ନ ହେବାରୁ କାଞ୍ଚିକାବେରୀ ଯଥାର୍ଥରେ ଓଡ଼ିଆ ସାହିତ୍ୟର ପ୍ରଥମ ନାଟକ ।

ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ କବି ଗଙ୍ଗାଧର ମେହେରଙ୍କ ଆଦର୍ଶ ସଦାବେଳେ ମହାଭାରତୀୟ ଭିତ୍ତିରେ ପ୍ରତିଷ୍ଠିତ । ତାଙ୍କ ସାହିତ୍ୟ ସାଧନାର ପ୍ରଥମ ପର୍ଯ୍ୟାୟ ୧୮୯୨ରୁ ୧୯୦୩ ସାଲ ଭିତରେ ଘଟିଥିଲା । ଇନ୍ଦୁମତୀ, ଉତ୍କଳଲକ୍ଷ୍ମୀ, କୀଚକବଧ ପ୍ରଭୃତି ଯେଉଁ ରଚନାଗୁଡ଼ିକ ଏହି ସମୟ ମଧ୍ୟରେ ରଚିତ ହୋଇଛି, ସେଗୁଡ଼ିକ ପାଇଁ ତାଙ୍କୁ ପ୍ରେରଣା ଦେଇଥିଲେ କବିବର ରାଧାନାଥ । ୧୯୦୩ ସାଲ ପରେ ୧୯୧୦ ସାଲ ପର୍ଯ୍ୟନ୍ତ ଗଙ୍ଗାଧରଙ୍କ ଲେଖନୀ

ଗୁଳନା ବନ୍ଦ ହୋଇଥିଲା । ୧୯୧୦ ସାଲରୁ ପୁଣି ଆରମ୍ଭ ହେଲା ଦ୍ୱିତୀୟ ପର୍ଯ୍ୟାୟ ।

ଉପର୍ଯ୍ୟୁକ୍ତ କବି ବା ଲେଖକମାନଙ୍କର ସାହିତ୍ୟ ସାଧନା ଆଧୁନିକ ଓଡ଼ିଆ ସାହିତ୍ୟକୁ ବଳବତ୍ତର କରି ଗଢ଼ିବା ସଙ୍ଗେ ସଙ୍ଗେ ଆଧୁନିକ ଓଡ଼ିଆ ସାହିତ୍ୟର ଭବିଷ୍ୟତ ପାଇଁ ଏକ ଉନ୍ନତ ପୃଷ୍ଠ ଭୂମି ନିର୍ମାଣ କରିଅଛି । ଏ ଯୁଗରେ କେବଳ ପଦ୍ୟର ପ୍ରାଧାନ୍ୟ ସ୍ୱୀକୃତ ହେଲେହେଁ ଗଦ୍ୟର ବିକାଶ ଲଗି ଯଥେଷ୍ଟ ସଙ୍କେତ ମିଳିଛି । ମଧୁସୂଦନ, ରାମଶଙ୍କର, ରାଧାନାଥ ପ୍ରମୁଖ ଲେଖକମାନଙ୍କର ଲେଖାରୁ ଗଦ୍ୟ-ସାହିତ୍ୟ ଉଙ୍କିମାରି ଉଠିଥିଲେ ହେଁ ଆଧୁନିକ ଗଦ୍ୟ ସାହିତ୍ୟର ପ୍ରାଣ ପ୍ରତିଷ୍ଠା ନିମିତ୍ତ ଆଉ ଜଣେ ସାହିତ୍ୟରଥୀଙ୍କର ଦାନ ଅପରିସୀମ । ସେ ହେଉଛନ୍ତି ଓଡ଼ିଆ ସାହିତ୍ୟର ବ୍ୟାସକବି ଫକୀରମୋହନ । ଓଡ଼ିଆ ସାହିତ୍ୟକୁ ଗଳ୍ପ, ଉପନ୍ୟାସ ଜରିଆରେ ସମୃଦ୍ଧ କରିବା ନିମିତ୍ତ ତାଙ୍କର ସାଧନା ଏ ପର୍ଯ୍ୟନ୍ତ ଅନତିକ୍ରମ୍ୟ ।

## ( ୬ ) ଫକୀରମୋହନଙ୍କର ଉପନ୍ୟାସ—

| | |
|---|---|
| ଛମାଣ ଆଠଗୁଣ୍ଠ | ୧୮୯୭ ସାଲ |
| ଲଛମା | ୧୯୦୧ ସାଲ |
| ମାମୁଁ | ୧୯୧୩ ସାଲ |
| ପ୍ରାୟଶ୍ଚିତ୍ତ | ୧୯୧୫ ସାଲ |

ଫକୀରମୋହନଙ୍କ ପ୍ରାଥମିକ ଜୀବନରେ ଅନ୍ୟାନ୍ୟ ସାହିତ୍ୟ ସାଧନାର ସଙ୍କେତ ଦେଖାଗଲେହେଁ ତାଙ୍କର ପ୍ରକୃତ ସାହିତ୍ୟ ସୃଷ୍ଟି ୧୮୯୭ ସାଲରୁ ଆରମ୍ଭ ହୋଇଅଛି । ତାଙ୍କ ଜୀବନରେ

୧୮୭୧ ରୁ ୧୮୯୭ ସାଲ ଭିତରେ ଓଡ଼ିଶାର ବିଭିନ୍ନ ଦେଶୀୟ ରାଜ୍ୟମାନଙ୍କରେ କର୍ମ କରିବାକୁ ପଡ଼ିଛି । ଶାସନ କ୍ଷେତ୍ରରେ କର୍ତ୍ତବ୍ୟର ଚାପରେ ଏହି ସମୟ ମଧ୍ୟରେ ତାଙ୍କର ସାହିତ୍ୟ ସାଧନା ବ୍ୟାହତ ହୋଇଛି । ତେଣୁ କର୍ମରୁ ଅବସର ନେବାପରେ ୧୮୯୭ ସାଲରେ ଛମାଣ ଆଠଗୁଣ୍ଠର ଆତ୍ମପ୍ରକାଶରେ ତାଙ୍କର ସୃଷ୍ଟି ସମ୍ପଦର ଯଥାର୍ଥ ପରିଚୟ ମିଳିଅଛି । ଫକୀରମୋହନଙ୍କର ଉପନ୍ୟାସର ଏକ ମୌଳିକ ବିଶେଷତ୍ୱ ହେଲା ଯେ, ସେଥିରେ ଆମ ସମାଜର ଠିକଣାଠି ବିବରଣୀ ଅତି ବାସ୍ତବ ରୂପରେ ରୂପାୟିତ । ୧୮୯୭ ସାଲ ପୂର୍ବରୁ ଓଡ଼ିଆ ସାହିତ୍ୟରେ କଳ୍ପନା-ପ୍ରସୂତ କାବ୍ୟକବିତା ବା କଥାକାହାଣୀର ଯେଉଁ ପରମ୍ପରା ଗଢ଼ି ଆସୁଥିଲା, ତାହା ଏହିଠାରେ ପରିବର୍ତ୍ତିତ ହୋଇ ବାସ୍ତବତାର ଚିତ୍ରଣରେ ରୂପାୟିତ ହେଲା । ରାଧାକୃଷ୍ଣ, ରାମ ସୀତା, ରାଜକୁମାର, ରାଜଜେମା ପ୍ରଭୃତିଙ୍କର ଜୀବନର କାଳ୍ପନିକ ଚିତ୍ର ପରିବର୍ତ୍ତେ ଆମ ସମାଜର ନିମ୍ନଶ୍ରେଣୀଠାରୁ ଉଚ୍ଚଶ୍ରେଣୀ ପର୍ଯ୍ୟନ୍ତ ଯେତେପ୍ରକାର ଚରିତ୍ର ସମ୍ଭବ ହୋଇ ପାରନ୍ତି, ସେହିମାନେ ହିଁ ସେନାପତିଙ୍କ ସାହିତ୍ୟରେ ଆତ୍ମପ୍ରକାଶ କଲେ । ଶାରିଆ, ଭଗିଆ, ଚମ୍ପା, ମଙ୍ଗରାଜ, ନଟବର ପ୍ରଭୃତିଙ୍କର ଜୀବନର ବାସ୍ତବରୂପ ସତେ ଯେପରି ସେନାପତି-ସାହିତ୍ୟ ମୁକୁରରେ ପ୍ରତିବିମ୍ବିତ ହୋଇ ଉଠିଛି ।

ଫକୀରମୋହନଙ୍କର ୪ଟି ଉପନ୍ୟାସ ଓଡ଼ିଶାର ସାମାଜିକ ଓ ରାଜନୈତିକ ଜୀବନର ଭିତ୍ତିଭୂମିକୁ ଆଶ୍ରୟ କରି ଗଢ଼ି ଉଠିଛି । ଏହି ୪ଟି ଉପନ୍ୟାସରେ ଓଡ଼ିଶାର ଗଣଜୀବନର ଦୀର୍ଘ ୨୦୦ ବର୍ଷର (୧୭୨୦-୧୯୨୦) ସାମାଜିକ ଇତିହାସ ନିଖୁଣ ଭାବରେ ଚିତ୍ରିତ ।

ଓଡ଼ିଶାର ଗଣଜୀବନରେ ଶୋଷକ ଓ ଶୋଷିତ ସମସ୍ୟାକୁ ରୂପଦାନ କରିଛି "ଛମାଣ ଆଠଗୁଣ୍ଠ" । ରାମଚନ୍ଦ୍ର ମଙ୍ଗରାଜ ଏଠାରେ ଗୋଟିଏ ଶୋଷକ ଶ୍ରେଣୀର ଐତିହାସିକ ପ୍ରତିନିଧି । ଏହି ଶୋଷକ ଶ୍ରେଣୀର ବୁଦ୍ଧି, କୌଶଳ, ଚକ୍ରାନ୍ତରେ ନିରୀହ ଦରିଦ୍ର ଜନସାଧାରଣ ଉପରେ ଶୋଷିତ ହୁଅନ୍ତି, ତାର ପ୍ରତ୍ୟକ୍ଷ ଉଦାହରଣ ଶାରିଆ ଓ ଭଗିଆ । ମରହଟ୍ଟା ଶାସନ ସମୟରେ ଓଡ଼ିଶାର ଗଣଜୀବନ ଉପରେ ଧ୍ୱଂସସ୍ତୂପ ଥିଲା, ଧନ ଜୀବନ ଉପରେ ନିରାପଦ ନ ଥିଲା, ତାର ଗୋଟିଏ ସୁନ୍ଦର ଚିତ୍ର ଦେଇଛି ଲଛମା । ଆଧୁନିକ ଶିକ୍ଷାଭିମାନୀ ସମାଜରେ ଇଂରେଜୀ ସୁବିଧାବାଦୀ ବ୍ୟବସ୍ଥା ସମୟରେ ସାର୍ଥାନ୍ୱେଷୀ ସମ୍ପତ୍ତିଲିପ୍ସା ଓ ଯଶଲିପ୍ସା କିପରି ଭାବରେ ସମାଜକୁ ଅନ୍ଧ କରିଥିଲା, ତାହା 'ମାମୁଁ' ଉପନ୍ୟାସରେ ଚିତ୍ରିତ ହୋଇଅଛି । ଶୁଣାଯାଏ ୧୯୧୨ରୁ ୧୯୧୫ ସାଲ ପର୍ଯ୍ୟନ୍ତ ପଲ୍ଲିକବି ନନ୍ଦକିଶୋର ବାଲେଶ୍ୱର ଜିଲ୍ଲା-ସମୂହର ଡେପୁଟୀ ଇନସ୍‌ପେକ୍ଟର ଥିବା ସମୟରେ ଫକୀରମୋହନଙ୍କ ସମ୍ପର୍କରେ ଆସିଥିଲେ । ଏପରିକି ଫକୀରମୋହନ ନନ୍ଦକିଶୋରଙ୍କୁ ନିଜ ଗୃହରେ ସ୍ଥାନ ଦେଇଥିଲେ । ଦୁଇ ସାହିତ୍ୟିକଙ୍କ ମଧ୍ୟରେ ପ୍ରତ୍ୟହ ସାହିତ୍ୟ ଚର୍ଚ୍ଚା ହୁଏ । ନନ୍ଦକିଶୋର ତାଙ୍କର ଜଣେ ବନ୍ଧୁଙ୍କର ମାମୁଁ ତାଙ୍କ ଭଣଜାଙ୍କ ପ୍ରତି ଯେଉଁ ଅତ୍ୟାଚାର କରିଥିଲେ, ସେହି କାହାଣୀଟି ଫକୀରମୋହନଙ୍କ ଆଗରେ ବର୍ଣ୍ଣନା କରିଥିଲେ । ସେ ବର୍ଣ୍ଣନାଟି ଶୁଣି ଫକୀରମୋହନ ଅତିଶୟ ମର୍ମାହତ ହୋଇଥିଲେ ଓ ସେହି ବର୍ଣ୍ଣନାକୁ ଆଶ୍ରୟ କରି ୧୯୧୩ ସାଲରେ ମାମୁଁ ଉପନ୍ୟାସ ରଚନା ଆରମ୍ଭ କରିଥିଲେ । ଆଧୁନିକ ଶିକ୍ଷାଭିମାନୀ ସମାଜରେ ଯେଉଁ ନବ୍ୟଶିକ୍ଷିତ ବାବୁ ଶ୍ରେଣୀ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଗଢ଼ି ଉଠିଥିଲା, ସେହି ଶ୍ରେଣୀର ବିକୃତ ଆଭିଜାତ୍ୟକୁ ଭିତ୍ତିକରି 'ପ୍ରାୟଶ୍ଚିତ୍ତ' ଉପନ୍ୟାସ ରଚିତ ।

## (୩) ଫକୀରମୋହନଙ୍କ ଉପନ୍ୟାସର ଐତିହାସିକତା ।

ଫକୀରମୋହନଙ୍କର ପ୍ରଥମ ଉପନ୍ୟାସ ଛମାଣ ଆଠଗୁଣ୍ଠ ଓ ଦ୍ୱିତୀୟ ଉପନ୍ୟାସ ଲଛମା ହେଲେହେଁ ଲଛମାରେ ବର୍ଣ୍ଣିତ ଘଟଣାବଳୀର ସମୟ ଛମାଣ ଆଠଗୁଣ୍ଠରେ ବର୍ଣ୍ଣିତ ଘଟଣାବଳୀର ସମୟର ପୂର୍ବବର୍ତ୍ତୀ । ଲଛମା ଏକ ଐତିହାସିକ ଉପନ୍ୟାସ । ଇତିହାସର ସତ୍ୟତାର ଅବମାନନା ଏଥିରେ କରାଯାଇ ନାହିଁ କହିଲେ ଚଳେ । ତଥାପି ଉପନ୍ୟାସ ହିସାବରେ ଐତିହାସିକ କଥାବସ୍ତୁକୁ ଆକର୍ଷଣୀୟ କରିବା ନିମିତ୍ତ ଯେତିକ କଳ୍ପନା ଯୋଗ କରିବାର କଥା, ତାହା କରାଯାଇଅଛି । ତେଣୁ ଲଛମା ଉପନ୍ୟାସ କେବଳ ଲଛମା ଓ ବାଦଲସିଂ ଜୀବନର ଇତିହାସ ନୁହେଁ । ଏହା ୧୮ଶ ଶତାବ୍ଦୀର ସାମନ୍ତବାଦୀ ସଭ୍ୟତାର ପତନୋନ୍ମୁଖୀ ଅବସ୍ଥାର ଏକ ନିଛକ ଇତିହାସ । ନବାବ ଆଲିବର୍ଦ୍ଦିଖାଁଙ୍କ ସମୟରେ ୧୭୪୨ ଓ ୧୭୪୩ ସାଲରେ ଦୁଇଥର ବର୍ଗୀଅତ୍ୟାଚାର ହେତୁ ରାଜ୍ୟରେ ବିପତ୍ତି ଦେଖା ଦେଇଥିଲା । ବର୍ଗୀ ଅତ୍ୟାଚାରରୁ ନିଜ ରାଜ୍ୟକୁ ମୁକ୍ତ ରଖିବା ନିମନ୍ତେ ନବାବ ଗୋଟିଏ ଛଳନାର ଆଶ୍ରୟ ନେଇଥିଲେ । ବର୍ଗୀମାନଙ୍କର ନେତା ଭାସ୍କର ପଣ୍ଡିତଙ୍କୁ ଏକ ସନ୍ଧି କରିବା ଉଦ୍ଦେଶ୍ୟରେ ମାନକରକୁ ଡକାଇ ଅଣାଯାଇ ଥିଲା । ସନ୍ଧି ପରିବର୍ତ୍ତେ ସେଠାରେ ୧୭୪୪ ସାଲ ମାର୍ଚ୍ଚ ୩୧ ତାରିଖରେ ତାଙ୍କୁ ନିର୍ମମ ଭାବରେ ହତ୍ୟା କରାଯାଇଥିଲା । ଏହି ଘଟଣାର ବର୍ଣ୍ଣନା ଲଛମା ଉପନ୍ୟାସରେ ଅଛି । ଆଲିବର୍ଦ୍ଦିଖାଁଙ୍କ ନିକଟରୁ ସେକ୍ ସମର ଖାଁ ବାଲେଶ୍ୱରର ସୋରୋ ଗ୍ରାମରେ ଥିବା ମିରକାଶିମଙ୍କ ପାଖକୁ ଯେଉଁ ପତ୍ର ଆଣିଥିଲେ, ତାର ସମସ୍ତ ହେଉଛି "ସନ୍ ୧୧୪୮ ରମଜାନ ମହିନା ତେସରା ରୋଜ ପୀର,

ଚକ୍ର ମୁର୍ଶିଦାବାଦ ।" ଅର୍ଥାତ୍ ଏ ପତ୍ରର ପ୍ରକୃତ ସମୟ ହେଉଛି ୧୭୪୦ ସାଲ । ଭାସ୍କର ପଣ୍ଡିତଙ୍କ ହତ୍ୟା ଏବଂ ଏହି ପତ୍ର, ଏ ଦୁଇଟିର ସମୟକୁ ଧରି ବସିଲେ ଲଛମା ଉପନ୍ୟାସରେ ବର୍ଣ୍ଣିତ କଥାବସ୍ତୁର ସମୟ ୧୭୪୦ରୁ୧୭୪୪ ସାଲ ଭିତରେ ଗତି କରିଛି । ତେଣୁ ଏହି ଉପନ୍ୟାସରେ ୧୭୨୦ରୁ ୧୮୦୦ ସାଲ ପର୍ଯ୍ୟନ୍ତ ଓଡ଼ିଶାର ରାଜନୈତିକ ଇତିହାସର ଚିତ୍ର ଦିଆଯାଇଛି ।

ବର୍ଗୀ ଅତ୍ୟାଚାରର ପରେ ମରହଟ୍ଟା ଶାସନ (୧୭୫୧-୧୮୦୩) ସମୟରେ ଓ ତାପରେ ଇଂରେଜ ଶାସନ (୧୮୦୩) ସମୟରେ ଓଡ଼ିଶାର ରାଜନୈତିକ ଇତିହାସ ସହିତ ଫକୀରମୋହନ କିପରି ଭାବରେ ପରିଚିତ ଥିଲେ, ତାହା ଛମାଣ ଆଠଗୁଣ୍ଠରୁ ଜଣାଯାଏ । ଶାରିଆର ମୃତ୍ୟୁ ଖବର ତା୩୧୦।୧୮୩୧ ସାଲ ସକାଳେ ଦାରୋଗାବାବୁ ଶୁଣିଛନ୍ତି । ସେହି ମାସ ତା୧୦ରିଖରେ ସେ ଏହାର ରିପୋର୍ଟ ଲେଖିଛନ୍ତି । ୧୭।୫।୧୮୩୮ସାଲରେ ରାମଚନ୍ଦ୍ର ମଙ୍ଗରାଜ ଜେଲଦଣ୍ଡ ପାଇଛନ୍ତି । ଏଥିରୁ ଜଣାଯାଏ, ଛମାଣ ଆଠଗୁଣ୍ଠର କଥାବସ୍ତୁ ୧।୦୦ରୁ୧୮୪୦ ସାଲ ଭିତରେ ଗତି କରିଛି । ତେଣୁ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶାର ଗଣଜୀବନର ସାମାଜିକ ଇତିହାସର ପରିଚୟ ଏହି ଛମାଣ ଆଠଗୁଣ୍ଠରୁ ମିଳେ । ତାର ପରବର୍ତ୍ତୀକାଳର ସାମାଜିକ ଇତିହାସ ପାଇଁ ମାମୁଁ ଉପନ୍ୟାସ ହିଁ ଯଥେଷ୍ଟ । ନାଜର ନଟବର ଦାସଙ୍କ ପାଖକୁ ଗୋକୁଳ ପଟ୍ଟନାୟକଙ୍କର ବେନାମି ଲେଖା ସମୟ ହେଉଛି ୧୨୮୦ ସାଲ ମକର ୭ଦିନ ବା ୧୮୭୩ ସାଲ ଫେବ୍ରୁୟାରୀ ମାସ । ଟଙ୍କା ଚୋରି ବିଷୟରେ ପୋଲିସ୍ ରିପୋର୍ଟ ଲେଖାଯାଇଛି ୧୮୭୯ ସାଲ ଜୁନ ମାସ ୪ ତାରିଖରେ । ଏହିପରି ଭାବରେ ଗ୍ରହଣକର୍ତ୍ତା

ନିଆଯାଇପାରେ ଯେ "ମାମୁଁ"ରେ ଘଟିତ ଘଟଣାବଳୀ ୧୮୪୧ରୁ ୧୮୮୦ ଭିତରେ ଘଟିଥିବା ସମ୍ଭବପର । ଆଧୁନିକ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଅଭ୍ୟୁଦୟ ୧୮୬୦ ସାଲରୁ ବଙ୍ଗଳାରେ ଦେଖା ଦେଇଛି । କିନ୍ତୁ ଓଡ଼ିଶାରେ ପ୍ରକୃତରେ ଏହା ୧୮୭୦ ସାଲରୁ ଦେଖା ଦେଇଛି । କିନ୍ତୁ ଏହାର ପୂର୍ଣ୍ଣ ବିକାଶ ୧୮୮୧ରୁ୧୯୨୦ ସାଲ ଭିତରେ ଓଡ଼ିଶାରେ ହୋଇଛି । ଗୋବିନ୍ଦଚନ୍ଦ୍ର, ସଦାନନ୍ଦ, ରାଜୀବ ଲୋଚନ, କମଲୋଚନ ପ୍ରଭୃତି ୧୮୮୧ରୁ ୧୯୨୦ ସାଲ ଭିତରର ଆଧୁନିକ ଶିକ୍ଷିତ ଗୋଷ୍ଠୀର ପ୍ରତିନିଧି । ତେଣୁ ପ୍ରାୟଶ୍ଚିତ୍ତ ଉପନ୍ୟାସର କଥାବସ୍ତୁ ଉପର୍ଯ୍ୟୁକ୍ତ ସମୟ ଭିତରେ ଘଟିଥିବା ସମ୍ଭବପର ।

ସେନାପତିଙ୍କ ଚୁରୋଟି ଉପନ୍ୟାସ ଓଡ଼ିଶାର ସାମାଜିକ ଜୀବନର ଦୀର୍ଘ ୨୦୦ ବର୍ଷର ଇତିହାସ ବୋଲି ଧରିନେବାରେ ଅସମୀଚୀନତା ଅଛି ବୋଲି ମନେହୁଏ ନାହିଁ । ଏହି ୪ଟି ଉପନ୍ୟାସରେ କ୍ରମାଗତ ଭାବରେ ଦୀର୍ଘ ୨୦୦ ବର୍ଷର ସାମାଜିକ ଇତିହାସକୁ ଯେପରି ଭାବରେ ସନ୍ନିବେଶିତ କରାଯାଇଛି, ବାସ୍ତବରେ ତାହା ପ୍ରଣିଧାନର ଯୋଗ୍ୟ । ଏହି ଦୀର୍ଘ ୨୦୦ ବର୍ଷର ସାମାଜିକ ଇତିହାସକୁ ଲେଖିବା ନିମିତ୍ତ ସେନାପତିଙ୍କର ଅନ୍ତର୍ଦୃଷ୍ଟି ଯେ କେତେ ବେଶୀ ତାହା କଳନା କରାଯାଇ ପାରିବ ନାହିଁ ।

## ( ୪ ) ଫକୀରମୋହନଙ୍କ କ୍ଷୁଦ୍ର ଗଳ୍ପ ।

ଫକୀରମୋହନଙ୍କ ଆତ୍ମଜୀବନୀ ଚରିତ ( ପୃ ୧୭୩-୧୭୪ ) ଅବଲମ୍ବନ କରି ଶ୍ରୀ ସୁରେନ୍ଦ୍ର ମହାନ୍ତି ଫକୀରମୋହନଙ୍କୁ ସମଗ୍ର ଭାରତୀୟ ସାହିତ୍ୟରେ ସର୍ବପ୍ରଥମ କ୍ଷୁଦ୍ରଗଳ୍ପ ଲେଖକ ରୂପେ

ପ୍ରତିପାଦନ କରିବାକୁ ଚେଷ୍ଟା କରିଅଛନ୍ତି । ଫକୀରମୋହନଙ୍କ ଆତ୍ମ-ଜୀବନ ଚରିତରେ ଅଛି— "ବାଲେଶ୍ୱରରେ ଶିକ୍ଷକତା କରୁଥିବା ସମୟରେ ମୋର କବିତା ଲେଖିବାର ପ୍ରବୃତ୍ତି ଥିଲା । ସେଠାକାର ପ୍ରେସରୁ ଖଣ୍ଡିଏ ମାସିକ ପତ୍ରିକା ବାହାରୁଥିଲା । ମୁଁ ସେଥିରେ ଆମୋଦଜନକ କବିତା ଲେଖୁଥିଲି । ସେହି "ବୋଧଦାୟିନୀ" ପତ୍ରିକାରେ ମୁଁ ଗୋଟିଏ ଗଳ୍ପ ଲେଖିଥିଲି । ତାହାର ନାମ ଲଛମନିଆ । ବୋଧକରେ, ଉତ୍କଳରେ ତାହା ହିଁ ପ୍ରଥମ ମୁଦ୍ରିତ ଗଳ୍ପ" । ଯଦି ଫକୀରମୋହନଙ୍କ ଆତ୍ମଜୀବନ ଚରିତର ଉକ୍ତ ବିବରଣୀ ସତ୍ୟ ହୁଏ, ତେବେ ଫକୀରମୋହନଙ୍କୁ ଗଳ୍ପ ସ୍ରଷ୍ଟାର ସମ୍ମାନ ଦିଆ ଯାଇପାରେ, ମାତ୍ର ଫକୀରମୋହନ ଆତ୍ମଚରିତ ପ୍ରଥମେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହେବା ସମୟରେ (ଯେତେବେଳେ କି ଫକୀରମୋହନ ନିଜେ ଲେଖୁଥିଲେ ) ବୋଧଦାୟିନୀ ପତ୍ରିକା କଥାର ଉଲ୍ଲେଖ ଥିଲେ ହେଁ ଲଛମନିଆ କଥାର କୌଣସି ଉଲ୍ଲେଖ ନାହିଁ । ସେନାପତିଙ୍କ ବିୟୋଗ ପରେ ତାଙ୍କର ଆତ୍ମଜୀବନ-ଚରିତକୁ ଯେପରି ଭାବରେ କଟାକଟି କରି ବା ଅଧିକ ଯୋଗକରି ପ୍ରକାଶ କରାଯାଇଛି, ସେଥିରୁ ମନେହୁଏ ଏହି ଲଛମନିଆ ଗଳ୍ପ କେବଳ ଆତ୍ମଜୀବନ-ଚରିତ ପ୍ରକାଶକଙ୍କର କପୋଳକଳ୍ପିତ ।

ବାସ୍ତବରେ ଦେଖିବାକୁ ଗଲେ ଫକୀରମୋହନଙ୍କର ପ୍ରଥମ ଗଳ୍ପ ହେଉଛି ରେବତୀ । ୧୮୯୮ ସାଲ ଅକ୍ଟୋବର ମାସରେ ଏହା ପ୍ରକାଶ ପାଇଛି । ରେବତୀ ପ୍ରକାଶ ପୂର୍ବରୁ ମଧୁସୂଦନଙ୍କର ପ୍ରଣୟୀର ଅଦ୍ଭୁତ ପରିଣାମ (୧୮୭୪) ହେମମାଳା (୧୮୯୭), ରାଧାନାଥଙ୍କ ଇଟାଲୀୟ ଯୁବା (୧୮୭୪) ପ୍ରଭୃତି କେତେକ ଲେଖା

ଗଳ୍ପ ନାମରେ ପ୍ରକାଶ ପାଇଥିଲା । ମାତ୍ର ଏ ଗୁଡ଼ିକ କେବେହେଲେ କ୍ଷୁଦ୍ର ଗଳ୍ପ ହୋଇ ନ ପାରନ୍ତି । ତେଣୁ ରେବତୀ କେବଳ ଫକୀର ମୋହନଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ ନୁହେଁ, ଓଡ଼ିଆ ସାହିତ୍ୟର ପ୍ରଥମ କ୍ଷୁଦ୍ରଗଳ୍ପ । ରେବତୀ ଗଳ୍ପରେ ରେବତୀର ପାଠପଢ଼ା ପ୍ରତି ତା ବୁଢ଼ିମାଆର ଯେଉଁ ଆକ୍ଷେପ, ତାହା ସେସମୟର ସମାଜର କୁସଂସ୍କାରର ଏକ ନମୁନା । "ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୂ ମଲା, ହଳଆ ଗୁଡ଼ିଗଲା, ବଳଦ ବିକାଗଲା, ଜମିଦାର ଘର ଗାଈ ବାନ୍ଧି ଦେଲେଗଲା, ରେବତୀ କୁଲକ୍ଷଣୀ, ରେବତୀ କୁଢଙ୍ଗୀ, ରେବତୀ ଲକ୍ଷ୍ମୀଛାଡ଼ୀ । ବୁଢ଼ୀ ଆଖିକି ଯେ ଦିଶୁନାହିଁ ତାର କାରଣ ରେବତୀର ପାଠପଢ଼ା ।" କେବଳ ଏତିକି ନୁହେଁ ଯେଉଁ ମାଷ୍ଟର ରେବତୀକୁ ପାଠ ପଢ଼ାଉଥିଲେ ସେ ମଲେ କେବଳ ରେବତୀକୁ ପାଠ ପଢ଼ାଇବା ଯୋଗୁଁ । ସ୍ତ୍ରୀ ଶିକ୍ଷାପ୍ରତି ସେ କାଳରେ କି ମନୋବୃତ୍ତି ଥିଲା, ଉପରୋକ୍ତ ଉଦ୍ଧୃତାଂଶ ତାର ପରିଚୟସୂଚକ । ଗଳ୍ପର କରୁଣରସ ପାଠକ ମନରେ ସମବେଦନା ଜାଗ୍ରତ କରିବା ସଙ୍ଗେ ସଙ୍ଗେ ପାଠକହୃଦୟକୁ ସ୍ପର୍ଶ କରେ । ବାପାଙ୍କର ମୃତ୍ୟୁ, ଧନସମ୍ପଦ ହାନି, ବାସୁଦେବର ମୃତ୍ୟୁରେ ମଧ୍ୟ କରୁଣରସ ସୀମିତ ହୋଇ ପାରିନାହିଁ । ଏହା ଯଥାର୍ଥରେ ସୀମା ସ୍ପର୍ଶ କରିଛି ରେବତୀ ଓ ବୁଢ଼ୀମାଆର ମୃତ୍ୟୁରେ । ଗୋଟିଏ କୁସଂସ୍କାରର ବିରୁଦ୍ଧାଚରଣ କରିବାକୁ ଯାଇ ଫକୀରମୋହନ ଏହି ଯେଉଁ ଗଳ୍ପର ଅବତାରଣା କରିଅଛନ୍ତି, ତାହା ବାସ୍ତବରେ ଏକ ସାର୍ଥକ ସୃଷ୍ଟି ।

ସେହିପରି ସଂସ୍କାର ପ୍ରୟାସକୁ ନେଇ 'ଗାରୁଡ଼ି ମନ୍ତ୍ର' ଗଳ୍ପ ଲିଖିତ । ଗାରୁଡ଼ି ମନ୍ତ୍ର ପ୍ରୟୋଗ ପୂର୍ବରୁ ମଦନମୋହନ ବିଭିନ୍ନ ରଙ୍ଗର କାଗଜରେ ଗୋଟିଏ ନକଲି ଚନ୍ଦ୍ରାସାପ ତିଆରି କରି ସନ୍ଧ୍ୟା ସମୟରେ ବୋହୂ ବାହାରକୁ ଯିବାବେଳେ ତା ଗୋଡ଼ ଉପରକୁ

ଫକାଇ ଦେଇଛନ୍ତି ଏବଂ ଗୋଡରେ ଏକ କଣ୍ଟା ପୋଡ଼ି ଦେଇଛନ୍ତି । ଫଳରେ ବୋହୂ ବେହୋସ ହୋଇ ଯାଇଛନ୍ତି ।

ମନ୍ତ୍ରଫୁଙ୍କା ହେଲାବେଳେ ବୋହୂ ମୁହଁରୁ ଲୁଗା କାଢ଼ିବା, ଜଡ଼ା ଫିଙ୍ଗାଇବାବେଳେ ବୋହୂର ଭଡ଼ମୋଡ଼ି ହେବା ଏବଂ ଗାରୁଡ଼ି ମନ୍ତ୍ର ଡାକବାବେଳେ ସାଆନ୍ତଙ୍କ ମୁହଁକୁ ଅନାଇବାରେ କୁସଂସ୍କାର ଦୂରକରିବାର ଯେ ପ୍ରୟାସ କରାଯାଇଛି, ତାହା ଚିନ୍ତା କରିବାର କଥା । ପେଟେଣ୍ଟ୍ ମେଡ଼ିସିନ୍ ଗଳ୍ପରେ ସେତେବେଳର ସମାଜରେ ମଦ୍ୟପାୟୀ ଆଭିଜାତ୍ୟର ରୂପ ପ୍ରକାଶ ପାଇଛି । ମଦ୍ୟପାନ ନିମିତ୍ତ ଚନ୍ଦ୍ରମଣିଙ୍କର ବିଭିନ୍ନ ପ୍ରକାର ଚେଷ୍ଟା ଓ ମଦ୍ୟପାନରୁ ବିରତ କରାଇବା ନିମିତ୍ତ ସୁଲୋଚନାଙ୍କ ସମସ୍ତ ଚେଷ୍ଟା ମଧ୍ୟରେ ସୁଲୋଚନାଙ୍କର ବିଜୟ ହୋଇଥିଲେହେଁ ଏହି ବିଜୟ ନିମିତ୍ତ ସୁଲୋଚନାଙ୍କର କର୍ମପନ୍ଥା ଯେଉଁ ହାସ୍ୟରସ ଉଦ୍ରେକ କରେ, ତାହା ଏକ ବିଶିଷ୍ଟ ଶ୍ରେଣୀର । ପତିଙ୍କୁ ସତ୍‌ପଥକୁ ଆଣିବା ନିମିତ୍ତ ଦେବ ଆରାଧାନଠାରୁ ଆରମ୍ଭ କରି ପୂଜାବ୍ରତ ପାଳନ କରିବା ପର୍ଯ୍ୟନ୍ତ ସମସ୍ତ ଚେଷ୍ଟା ସତ୍ତ୍ୱେ ପତିଙ୍କ ପ୍ରତାରଣା ଝାଙ୍ଗୁଣୀ ମାଡର ଆଘାତରେ ପତିଙ୍କୁ ସତ୍‌ପଥକୁ ଆଣିବାରେ ସଫଳ ହୋଇଛନ୍ତି ସୁଲୋଚନା । ଏହି ଝାଙ୍ଗୁଣୀମାଡ଼କୁ ଫକୀରମୋହନ ପେଟେଣ୍ଟ୍ ମେଡ଼ିସିନ୍ ବୋଲି କହିଛନ୍ତି । ନିଜର ଘର ସଂସାରକୁ ଗଢ଼ି ତୋଳିବାରେ ସୁଲୋଚନାଙ୍କର ବ୍ୟଗ୍ରତା ଏଠାରେ ଲକ୍ଷ୍ୟ କରିବାର କଥା । ତେଣୁ ଝାଙ୍ଗୁଣୀମାଡ଼ ଏଠାରେ ତାଙ୍କର କୌଣସି ମନ୍ଦ ଉଦ୍ଦେଶ୍ୟ ପ୍ରଖ୍ୟାପନ ନ କରି ଏକ ମହତ୍ ଉଦ୍ଦେଶ୍ୟର ପରିଚୟ ଦିଏ ।

"ଡାକ ମୁନ୍‌ସି" ଗଳ୍ପରେ ଫକୀରମୋହନଙ୍କର ନୈସର୍ଗ ସଂସ୍କାର ଲିପ୍‌ସାର ସୂଚନା ମିଳେ । ଜୀବନସାରା ଦୁଃଖ କଷ୍ଟ

ଚଳି ଜଣେ ଡାକପିଅନ ନିଜ ପୁଅକୁ ଯୋଗ୍ୟ କରିବାର ସ୍ୱପ୍ନ ଦେଖିଛି । ପୁଅ ଯୋଗ୍ୟ ହେବାପରେ ପୁଅକୁ ଚାକିରୀ ଦେବା ନିମିତ୍ତ ମଧ୍ୟ ସେ ଯଥେଷ୍ଟ ଚେଷ୍ଟା କରିଛି । ଆଶାଥିଲା, ବୃଦ୍ଧ ଅବସ୍ଥାରେ ପୁଅ ଯୋଗୁଁ ସୁଖରେ ସେ କାଳ ଅତିବାହିତ କରିବ; ମାତ୍ର ତାର ସେ ଆଶା ଦୁରାଶାରେ ପରିଣତ ହୋଇଛି ଯେତେବେଳେ ପୁଅ ଡାକମୁନ୍‌ସି ହୋଇ ବାପ ପ୍ରତି ଗୋଟିଏ ଚାକରର ବ୍ୟବହାର ଦେଖାଇଛି । ଶେଷରେ ବୁଢ଼ାବାପା ପୁଅକୁ ଚାକିରୀ ସ୍ଥାନରେ ଛାଡ଼ି ଗାଁକୁ ଚାଲି ଆସିଛି ଏବଂ ଗାଁରେ ପେନ୍‌ସନ୍‌ଲବ୍‌ଧ ଧନରେ ସୁଖେଦୁଃଖେ କାଳ ଅତିବାହିତ କରିଛି । ଏଠାରେ ଫକୀରମୋହନ ଦେଖାଇବାକୁ ଚେଷ୍ଟା କରିଛନ୍ତି ଯେ, ଇଂରେଜ ରାଜତ୍ୱ ଆରମ୍ଭରେ ଇଂରେଜୀ ଶିକ୍ଷାର ପ୍ରଚଳନ ଫଳରେ ଯେଉଁ ନବ୍ୟଶିକ୍ଷିତ ଯୁବକ ଶ୍ରେଣୀର ଅଭ୍ୟୁଦୟ ହୋଇଛି, ସେମାନଙ୍କ ମନୋବୃତ୍ତି କି ଉପାଦାନରେ ଗଢ଼ା ।

ବାଲେଶ୍ୱରୀ ରାଜାହାମି, ବାଲେଶ୍ୱରୀ ପଙ୍ଗାଲୁଣ, କମଳା-ପ୍ରସାଦ ଗୋରାପ, କାଳିକା ପ୍ରସାଦ ଗୋରାପ—ଏହି ଚାରୋଟି ରଚନାକୁ କ୍ଷୁଦ୍ରଗଳ୍ପ ନାମରେ ନାମିତ କରିବା ସମୀଚୀନ ହେବ ନାହିଁ । ପ୍ରକୃତ ପକ୍ଷରେ ଦେଖିବାକୁ ଗଲେ ଏଗୁଡ଼ିକ ଐତିହାସିକ ତଥ୍ୟପୂର୍ଣ୍ଣ ପ୍ରବନ୍ଧ ଛଡ଼ା ଅନ୍ୟ କିଛି ହୋଇ ନପାରେ । 'ଅଜାନାତି' କଥାରେ ସେହିପରି ଅଜାନାତିଙ୍କର କଥୋପକଥନ ଥିଲେହେଁ ତାହା କ୍ଷୁଦ୍ରଗଳ୍ପର ପରିଚୟ ପ୍ରଦାନ କରିବାକୁ ଅସମର୍ଥ । ମଣ୍ଡନା-ମଣ୍ଡମି ଓ ବଗଲିବଗୁଲି, ଦୁଇଗୋଟି କାହାଣୀ ରୂପେ ଦେଖାଯାଏ । 'ରଣ୍ଡୀପୁଅ ଅନନ୍ତା,' 'ଅଧର୍ମ ବିତ୍ତ,' ସଭ୍ୟ ଜମିଦାର' ଓ 'ବିରେଇ ବିଶାଳ' ପ୍ରଭୃତି ଗଳ୍ପର ବିଷୟବସ୍ତୁର କୌଣସି ନୂତନତ୍ୱ ନାହିଁ କହିଲେ ଚଳେ; ତଥାପି ଏଥିରେ ଫକୀର

ମୋହନଙ୍କର ସଂସ୍କାରମୁଖୀ ଦୃଷ୍ଟିକୋଣର ପରିଚୟ ମିଳେ । ଧୂଳିଆବାବା ଗଳ୍ପରେ ସତ୍ୟତା ନିହିତ ଥିବାଯୋଗୁଁ ଏହା ଫକୀରମୋହନଙ୍କର ସୃଷ୍ଟି ପ୍ରେରଣାର ସଙ୍କେତ ଦିଏ । ପୂର୍ନମୂଷିକୋଭବ, ସୁନାବୋହୂ, ପାଠୋଈ ବୋହୂ, ମାଧମହାନ୍ତିଙ୍କ କନ୍ୟା-ସୁନା ପ୍ରଭୃତି ଗଳ୍ପର ଆଙ୍ଗିକ ଓ ଆତ୍ମିକ ପରିପ୍ରକାଶରେ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହେଉଥିବାରୁ ରେବତୀ, ପେଟେଣ୍ଟ ମେଡ଼ିସିନ୍ ଓ ଗାରୁଡ଼ିମନ୍ତ୍ର ପରି ଏ ଗୁଡ଼ିକ ଗୋଟିଏ ଗୋଟିଏ ସାର୍ଥକ ସୃଷ୍ଟି ।

ଫକୀରମୋହନଙ୍କର ଗଳ୍ପଗୁଡ଼ିକରେ ଅନେକ ସମୟରେ ସତ୍ୟତାର ମାତ୍ରା ଥିବାରୁ ତାହା ସେତିକି ହୃଦୟଗ୍ରାହୀ ହେବାର କଥା ହୋଇପାରିଛି । ଗଳ୍ପର ପରିସ୍ଥିତି ବିଷୟରେ ହାସ୍ୟରସ ଅନେକ ସମୟରେ ଏକ ସ୍ୱତନ୍ତ୍ର ସ୍ଥାନ ଗ୍ରହଣ କରିଅଛି । ଏହି ହାସ୍ୟରସ ପାଠକକୁ ଯେତିକି ମୁଗ୍ଧ କରେ, ଗଳ୍ପର ପରିଣତି ପାଠକକୁ ଚିନ୍ତା ନିମିତ୍ତ ସେତିକି ଉପାଦାନ ଯୋଗାଇଥାଏ । ସାମାଜିକ ଜୀବନରେ ଫକୀରମୋହନ ନାନାପ୍ରକାର ଅନୁଭୂତି ନେଇ ସଂସାରର ଅସାରତା ଉପଲବ୍ଧି କରିଛନ୍ତି । ଆଧୁନିକତା ନାମରେ ସମାଜର ଅଧୋଗତି ତାଙ୍କ ପ୍ରାଣକୁ ସ୍ପର୍ଶ କରିଛି । ସଂସାରରେ ଏହି ଦୁଃଖମୟ ପରିସ୍ଥିତି ମଧ୍ୟରେ କଳା ସୃଷ୍ଟିରେ ହାସ୍ୟରସ ପରିବେଷଣ କରି ପାଠକକୁ ସେ ଆନନ୍ଦ ଦେବାର ପ୍ରୟାସ କରିଛନ୍ତି ।

## ( ୫ ) ଫକୀରମୋହନଙ୍କ ସାହିତ୍ୟରେ ହାସ୍ୟରସ—

ବିଶ୍ୱସାହିତ୍ୟରେ ବ୍ୟଙ୍ଗ-ସାହିତ୍ୟର ସୃଷ୍ଟି ପ୍ରଥମେ ଇଂରାଜୀ ସାହିତ୍ୟରେ ହୋଇଥିଲା ବୋଲି ଜଣାଯାଏ । ପୁଣି ବ୍ୟଙ୍ଗ-ସାହିତ୍ୟର ଆଦି ଜନ୍ମସ୍ଥାନ ରୋମ ବୋଲି ଅନେକ ମତବ୍ୟକ୍ତ

କରନ୍ତି । ଗ୍ରୀକ୍ ସାହିତ୍ୟରେ ହୋମର ଏବଂ ଅରିଷ୍ଟୋଫେନ୍ସ ପ୍ରାରମ୍ଭିକ ବଳିଷ୍ଠ ବ୍ୟଙ୍ଗ-ସାହିତ୍ୟ ଲେଖକ । ବାଇବେଲରେ ମଧ୍ୟ ବ୍ୟଙ୍ଗର ସୂଚନା ଅଛି । ସେ ଯାହା ହେଉନା କାହିଁକି, ଇଂରାଜୀ ସାହିତ୍ୟକୁ ବ୍ୟଙ୍ଗ ଲାଟିନ୍ ସାହିତ୍ୟରୁ ଆସିଛି ବୋଲି ଆଜି ପ୍ରମାଣ ମିଳୁଛି । ଇଂରାଜୀ ବ୍ୟଙ୍ଗ-ସାହିତ୍ୟର ସୃଷ୍ଟି ହୋଇଛି ଦ୍ୱାଦଶ ଶତାବ୍ଦୀରେ । ବ୍ୟଙ୍ଗ-ସାହିତ୍ୟର ଆଦିମ ସ୍ତରରେ ଚର୍ଚ୍ଚରେ ଘଟୁଥିବା ଧାର୍ମିକ ବ୍ୟଭିଚାରର ସମାଲୋଚନା ଦେଖା ଦେଇଥିଲା । ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ଇଂରାଜୀ ସାହିତ୍ୟରେ ପ୍ରାଧାନ୍ୟ ରହିତ ହୋଇ ବ୍ୟଙ୍ଗ-ସାହିତ୍ୟ ଗତିକରି ଆସିଛି । ୧୪ଶ ଶତାବ୍ଦୀରେ ଚସର ଇଂରେଜୀ ବ୍ୟଙ୍ଗ-ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଚସରଙ୍କଠାରୁ ପ୍ରଥମେ ରାଜଦରବାରର ଅନ୍ୟାୟ, ଅତ୍ୟାଚାର ଓ ନାରୀମାନଙ୍କର ବେଶଭୂଷାର ସମାଲୋଚନା ଇଂରେଜୀ ବ୍ୟଙ୍ଗ-ସାହିତ୍ୟରେ ଦେଖା-ଦେଲା । ଷୋଡ଼ଶଶତାବ୍ଦୀ ପରଠାରୁ ପ୍ରଥମେ ଇଂରାଜୀ ଗଦ୍ୟ-ସାହିତ୍ୟରେ ବ୍ୟଙ୍ଗ ଦେଖାଦେଲା । ୧୮ଶ ଶତାବ୍ଦୀରେ ଷ୍ଟିଲ, ଆଡ଼ିସନ୍, ଗୋଲଡ଼୍ ସ୍ମିଥ୍ ପ୍ରମୁଖ କବି ତଥା ଲେଖକଗଣ ପତ୍ର ପତ୍ରିକା ଜରିଆରେ ବ୍ୟଙ୍ଗ-ସାହିତ୍ୟକୁ ପୁଷ୍ଟ କଲେ । ଷ୍ଟିଲ ଓ ଆଡ଼ିସନ୍ଙ୍କ ମିଳିତ ପ୍ରଚେଷ୍ଟାରେ Spectator ନାମକ ପତ୍ରିକାର ପ୍ରକାଶ ଇଂରାଜୀ ସାହିତ୍ୟରେ ପତ୍ରିକା ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ବ୍ୟଙ୍ଗ-ସାହିତ୍ୟକୁ ସମୃଦ୍ଧ କରିଛି । ତାପରେ ପୁଣି ଇଂରାଜୀ ବ୍ୟଙ୍ଗ ସାହିତ୍ୟରେ ଦେଖା ଦେଲେ ଡ୍ରାଇଡେନ୍, ସୁଇଫ୍ଟ୍ ଓ ପୋପ୍ । ଊନବିଂଶ ଶତାବ୍ଦୀରେ ବଳିଷ୍ଠ ବ୍ୟଙ୍ଗ ଲେଖକ ଭାବରେ ଦେଖାଦେଇଛନ୍ତି ବର୍ଣ୍ଣସ୍, ବାଇରେନ୍ ଓ ସାମୁଏଲ ବଟ୍ଲର୍ । ଏହି ଲେଖକଗଣଙ୍କର ଲେଖାରେ ବ୍ୟକ୍ତିଗତ ତଥା ଆଚାର ବ୍ୟବହାର, ସାହିତ୍ୟ, ଧର୍ମ, ବାଣିଜ୍ୟ

ପ୍ରଭୃତି ସମସ୍ତ ବିଭାଗର ସମାଲୋଚନା କରିଛନ୍ତି । ଇଂରାଜୀ ବ୍ୟଙ୍ଗ-ସାହିତ୍ୟରେ ୧୬୪ଶ ଶତାବ୍ଦୀ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଏହି ସମୟରେ ଇଂରାଜୀ ବ୍ୟଙ୍ଗ-ସାହିତ୍ୟ ପୂର୍ଣ୍ଣ ବିକଶିତ ରୂପ ଗ୍ରହଣ କରିଛି ।

ଇଂରେଜୀ ସାହିତ୍ୟର ମାନଦଣ୍ଡରେ ଓଡ଼ିଆ ସାହିତ୍ୟକୁ ମାପି ବସିବା କେବେହେଲେ ଯୁକ୍ତିଯୁକ୍ତ ହେବ ନାହିଁ । ଆମ ଓଡ଼ିଆ ସାହିତ୍ୟର ବ୍ୟଙ୍ଗ-ସାହିତ୍ୟ କହିଲେ ଯାହା ବୁଝାଏ (Satire) ତାର ସୃଷ୍ଟି କେବଳ ରାଧାନାଥ ଯୁଗରେ ହିଁ ସମ୍ଭବ ହୋଇଛି । ମହାଭାରତରେ, ଯଦୁମଣି ରଚନାରେ, କଳସା ଚଉତିଶାରେ ଓ ବ୍ରଜନାଥ ବଡ଼ଜେନାଙ୍କ ରଚନାରେ ଯେଉଁ ପ୍ରକାର ବ୍ୟଙ୍ଗ-ସାହିତ୍ୟ ଦେଖାଯାଏ, ରାଧାନାଥ-ଯୁଗର ବ୍ୟଙ୍ଗ-ସାହିତ୍ୟ ତାହାଠାରୁ ସମ୍ପୂର୍ଣ୍ଣ ପୃଥକ୍ । ରାଧାନାଥ-ଯୁଗରେ ଫକୀରମୋହନ, ନନ୍ଦକିଶୋର, ଗଙ୍ଗାଧର ସମସ୍ତେ ବ୍ୟଙ୍ଗ-ସାହିତ୍ୟର ସୃଷ୍ଟି କରିଥିଲେହେଁ ଫକୀରମୋହନଙ୍କର ବ୍ୟଙ୍ଗ ସୃଷ୍ଟିର ଏକ ନିର୍ଦ୍ଦିଷ୍ଟ ସ୍ୱାତନ୍ତ୍ର୍ୟ ଅଛି ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ, ଦେଶୀୟ ଓ ବିଦେଶୀୟ ସଙ୍ଘର୍ଷ ମଧ୍ୟରେ ସମାଜକୁ ଏକ ସ୍ଥିର ନିର୍ଦ୍ଦେଶ ଦେବା ନିମିତ୍ତ ଫକୀରମୋହନ ଚେଷ୍ଟା କରିଛନ୍ତି । ଇଂରେଜୀ ଶାସନ ପ୍ରତିଷ୍ଠିତ ହେବାପରେ ଏ ଦେଶରେ ଅନୁକରଣର ପ୍ରବୃତ୍ତି ବିଶେଷ ଭାବରେ ଦେଖା ଦେଇଥିଲା । ଆଧୁନିକ ଶିକ୍ଷିତ-ଗୋଷ୍ଠୀ ନିଜ ଜାତିର ସ୍ୱାତନ୍ତ୍ର୍ୟ ଭୁଲି ବିଦେଶୀୟ ଚାକଚକ୍ୟରେ ମନ ଦେଲେ । ସମାଜର ଏହିପରି ଏକ ଅବ୍ୟବସ୍ଥିତ ପରିସ୍ଥିତିରେ ଦେଶୀ ବିଦେଶୀର ଆନ୍ଦୋଳନରେ ବିଦେଶୀର ଜୟଲାଭ ସମୟରେ ଫକୀରମୋହନଙ୍କର ଜନ୍ମ । ଦେଶ ତଥା ଜାତିର ଏ ଅଧଃପତନରେ ସେ ମର୍ମାହତ ହୋଇଛନ୍ତି । "ମୁଁ ହାଟ ବାହୁଡ଼ା"ରେ ତାଙ୍କର ମନୋବୃତ୍ତି ସ୍ପଷ୍ଟତର ହୋଇଅଛି ।

ଫକୀରମୋହନ ଲେଖିଛନ୍ତି, "ସେମାନେ ବିଦ୍ୱାନ—ଆପଣା ଜେଜେବାପାର ବାପା ନାମ ପଚ୍ଛରେ, ଅଜ୍ଞାନ ହେବେ, କିନ୍ତୁ ଇଂଲଣ୍ଡର ସପ୍ତମ ଷ୍ଟୁଆର୍ଟଙ୍କର ପଞ୍ଚଦଶ ପୁରୁଷଙ୍କର ନାମ ସେମାନଙ୍କର କଣ୍ଠସ୍ଥ । ଇଂରେଜ ସମାଜ ବା ଫରାସୀ ସମାଜର କଥାଗୁଡ଼ାକ ପଢ଼ିଲେ ଲୋକେ ବିଦ୍ୱାନ କହିବେ, ଆପଣାର ବା ପ୍ରତିବେଶୀଜାତି ଓ ସମାଜର କଥା ଜାଣିବାର ବା ଦରକାର କଣ ? ବାବୁମାନେ ଏକଥା ଶୁଣିଲେ ଖପ୍‌ପା ହୋଇଯିବେ ।" ଏହି ଗୋଟିଏ ଉକ୍ତିରୁ ଫକୀରମୋହନଙ୍କର ବ୍ୟଙ୍ଗାତ୍ମକ ମନୋବୃତ୍ତିର ପରିଚୟ ମିଳେ ।

ଛମାଣ ଆଠଗୁଣ୍ଠରେ ମଙ୍ଗରାଜଙ୍କ ଚରିତ୍ରରେ ଫକୀରମୋହନ ବ୍ୟଙ୍ଗବିଦ୍ରୂପର ଯଥେଷ୍ଟ ଅବତାରଣା କରିଛନ୍ତି । ତାଙ୍କର ଏକାଦଶୀ ପାଳନ ଓ ତାଙ୍କର ମାଉସୀପୁଅ ଭାଇ ଶ୍ୟାମମଲ୍ଲ ସହରକୁ ଯାଇ ପିଆଜମିଶା କୋବି ଖାଇଥିବାରୁ ୧୫ମାଣ ଜମି ନେଇ ତାଙ୍କୁ ଜାତିରେ ମିଶାଇବା ବିଷୟ ମଙ୍ଗରାଜଙ୍କ ଚରିତ୍ର ବିଷୟରେ ଯଥେଷ୍ଟ ସୂଚନା ଦିଏ । ମଙ୍ଗରାଜଙ୍କର ଦାମୀପଣିଆ ବିଷୟରେ ଭିକାରି ପଣ୍ଡାଙ୍କୁ ଗୁଡ଼ ଦେଇଥିବା ଦେଢ ଗଣ୍ଡା ଅର୍ଥ କେବଳ ଯଥେଷ୍ଟ ନୁହେଁ । ଭିକାରି ପଣ୍ଡା କରଜ ନେଇଥିଲା କେବଳ ମୂଳ ପାଞ୍ଚଟଙ୍କା । କାଳକ୍ରମେ ଚକ୍ରବୃଦ୍ଧି ପ୍ରମାଣେ ବାରଟଙ୍କା ପାଞ୍ଚ ଅଣା ଏଗାର ଗଣ୍ଡା ଦୁଇକଉଡ଼ା । ଗାଏ ଦୁଇ ପଦକୁ ମୋଟ ଆଦାୟ ସତରଟଙ୍କା ପାଞ୍ଚଅଣା ଦୁଇପଇସା ବାକି ଗୁଡ଼ ଦେଢ଼ଗଣ୍ଡା । ମାମୁଁ ଉପନ୍ୟାସରେ ରଘୁଆର ଚରିତ୍ର ହାସ୍ୟୋଦ୍ଦୀପକ । ପ୍ରଥମେ ଆସିବାଦ୍ଦିନ ରଘୁଆ ଅଗଣାରେ ପଡ଼ିଯିବାର ଦୃଶ୍ୟ ପାଠକମାନଙ୍କ ମନରେ ହାସ୍ୟରସ ଜାତକରେ, ନଟବରବାବୁଙ୍କର ପୁସ୍ତକମାନ ଦେଖିବାପରେ ସେ ମନ୍ତବ୍ୟ ଦେଇଥିଲା, "ମଲି ମଲି, ଏଇଟା

ବଳଦ ପରି ଦିଶୁଛି", ଆଉ ଦୁଇପୁଡ଼ା ଓଲଟାଇ କହିଲା, "ହୋ ହୋ ହୋ ଏଇଟା ବଗିଚା, ଏଇଟା ଗୋଟାଏ ଗଛ, ସେଥି ଉପରେ ପତ୍ରଗୁଡ଼ାକ କମିତି ରଙ୍ଗ ଦିଶୁଛି ।"

ହାସ୍ୟରସ-ଉଦ୍ରେକ ନିମନ୍ତେ ଫକୀରମୋହନ କିପରି ଉପମାର ପ୍ରୟୋଗ କରିଛନ୍ତି, ତାହା ଦେଖିବାର କଥା । "ଦିନେ ଉପରଓଳି ଆଖୁନ୍‌ଜି ସାହେବ ଖାନା ଖାଇ ଚିତ୍ ହୋଇ ଶୋଇଲେ । କେଉଟମାନେ ଯେପରି ଡାଗ କାଟିବା ସକାଶେ ଛଣପଟି ବଡ଼ା ମେଲାଇ ଦେଇଥାନ୍ତି, ସେହିପରି ବଡ଼ାଏ ପାଚିଲା ଦାଢ଼ି ମିଆଁଙ୍କ ଛାତି ଓ ତୁଣ୍ଡକୁ ଘୋଡ଼ାଇ ପକାଇଥିଲା ।"

"ବାବାଜୀ ମୁହଁ ଅନ୍ଧାରରୁ ଉଠି ପ୍ରାତସ୍ନାନ ସାରି ନାସାଗ୍ରରୁ କେଶପର୍ଯ୍ୟନ୍ତ ଚିତା ଆଉ ଡେଢ଼ ଲେଟର ଅଫିସରୁ ବେଶି ଚିଠି ବାହୁଡ଼ାଲା ପରି ସର୍ବାଙ୍ଗରେ ଛାପା ଲଗାଇ ହରିନାମ ଶୁଣାଇବା ସକାଶେ ଗ୍ରାମକୁ ବାହାରନ୍ତି ।"

ପ୍ରଚଳିତ ଅର୍ଥକୁ ବିକୃତ କରି ହାସ୍ୟରସ ସୃଷ୍ଟି କରିବା ନିମିତ୍ତ ଫକୀରମୋହନ କେତେକ ସଂସ୍କୃତ ଶ୍ଳୋକର ବିକୃତ ଅର୍ଥ ଦେଇଅଛନ୍ତି । "ମୁନିନାଞ୍ଚ ମତିଭ୍ରମଃ—ଏହାର ଅର୍ଥ ସେ ଦେଇଛନ୍ତି, "ଯେଉଁମାନଙ୍କର ମତି ଭ୍ରମ ହୁଏ ସେମାନେ ମୁନି ।" "ଅନୁପାନ ବିଶେଷେଣ କରୋତି ବିବିଧାନ୍ ଗୁଣାନ୍—ହୋଇଲା ଅନୁପାନ ବିଶେଷ କରି କି ଅଧିକ କରି ଦେଲେ ବିଧା ମାଣିଲାପରି ଗୁଣ ହେବ ।"

ମାମୁଁ ଉପନ୍ୟାସରେ ହରିବୋଲ ବାରିକ ଚରିତ୍ର-ସୃଷ୍ଟି କେବଳ ହାସ୍ୟରସ ସୃଷ୍ଟି ନିମିତ୍ତ ଉଦ୍ଦିଷ୍ଟ । ବାରମ୍ବାର

ହରିବୋଲ ଶବ୍ଦ ତା ମୁଖରୁ ଶୁଣିଲେ ପାଠକ ନ ହସି ରହିପାରେ ନାହିଁ । ନରିବାବୁ ଜେଜାମାଙ୍କ ପାଖକୁ ପଞ୍ଚଶ୍ହକଡ଼ି ଟଙ୍କା ପଠାଇଲେ । ଲୋକମୁଖରେ ଏହି ଟଙ୍କା ପରିମାଣ ବହୁତ ପ୍ରକାର ଶୁଣାଗଲା । କେତେଟଙ୍କା ଆସିଛି ପ୍ରକୃତରେ ଜାଣିବାପାଇଁ ହରିବୋଲ ବାରିକକୁ ପଚରାଯିବାରୁ ସେ କହିଲା, "ଏଁ— ହରିବୋଲ ! ଜେଜାମା ଡକାଇଥିଲେ, ମୁଁ ଏଇଲାଗେ ଉଆସରୁ ଆସି ବସି ପଡ଼ୁଛି ପରା ! ମୁଁ ନିଜେ ଟଙ୍କା ଗଣି ଥଳିରେ ପୂରାଇ ମୁହଁ ବାନ୍ଧିଦେଲି । ଯୋଡ଼ାଏ ଥଳିରେ ହଜାର ହଜାର ଦୁଇ ହଜାର, ଆଉ ଗୋଟିଏ ଥଳିରେ ହଜାର ଏକଟଙ୍କା; ହାକିମମାନେ ଶୂନ ଟଙ୍କା ଧରନ୍ତି ନାହିଁ । ସେଥିଲାଗି ଟଙ୍କାଟିଏ ବଳକା ଦେଇଛନ୍ତି ।" ସେହି ମାମୁଁ ଉପନ୍ୟାସରେ ପଣ୍ଡିତ-ସଭାର ଚିତ୍ର ପାଠକକୁ ହସିବାକୁ ଯଥେଷ୍ଟ ଉପାଦାନ ଯୋଗାଏ । ବରଗଡ଼ ରାଜସଭା—ପଣ୍ଡିତ ରଙ୍ଗାଭଟଳା ଭେଙ୍କଟା ପାନୁଲୁ କହିଲେ, "ଦର୍ଶନ ଶାସ୍ତ୍ର ବଡ଼ କଠିନ କ୍ଷୀର ଥାଉଥିବାର ହେଲେ—ଅତି ଜ୍ଞାନପ୍ରଦ ଥାଉଛି । ଯେମନ୍ତ ମିରପକାଇଲୁ ବୋଇଲେ ଲଙ୍କାମରିଚ କ୍ଷୀର ଥାଉଛି । ମାନ ପୃଥିବୀରେ ସର୍ବଶ୍ରେଷ୍ଠ ଖାଦ୍ୟ ଥାଉଚ—ଲଙ୍କାମରିଚ୍ଚ ଆଉ ଦର୍ଶନ ଶାସ୍ତ୍ର ନ ଥିଲେ ମାନବାଲୁ ରକ୍ଷା ପାଇବାର ନାଇଁ ଏକକା ।"

"ମିରପକାଇଲୁ ଚିନ୍ତାପାଣ୍ଡ୍ରୁ ପେରଗୁ ମିଶ୍ରିତଂ
ବେଦା ଦର୍ଶନ ଶାସ୍ତ୍ରାଣି ଚ ସମ୍ଭବନ୍ତୁ ମମଜନ୍ମ ଜନ୍ମନି ।"

ଦୁଃଖ ଦୁର୍ବିପାକରେ ମଧ୍ୟ ଫକୀରମୋହନ ପାଠକକୁ ହସାଇବା ନିମିତ୍ତ ଉପାଦାନ ଯୋଗାଇଛନ୍ତି । ଏହି ହାସ୍ୟରସ କରୁଣ ରସ-ମିଶ୍ରିତ । ଛମାଣ ଆଠଗୁଣ୍ଠରେ ମଙ୍ଗରାଜଙ୍କ ମୃତ୍ୟୁ

ସମୟରେ ଶ୍ଳୋକର କଦର୍ଥ କରି ଏହିପ୍ରକାର ହାସ୍ୟରସ ସୃଷ୍ଟି କରାଯାଇଛି । ଶେଖ୍ କରାମତ୍ ଅଲ୍ଲି ତାଙ୍କ ପୁଅ ଦିଲ୍‌ଦାର ମିଆଁଙ୍କ ପାଇଁ ପାଠ ପଢ଼ିବା ନିମିତ୍ତ ଜଣେ ଆଖୁନ୍‌ଜି ନିଯୁକ୍ତ କରିଥିଲେ । ଦୁଷ୍ଟ ଦିଲ୍‌ଦାର ଦିନେ ଆଖୁନ୍‌ଜି ଶୋଇଥିବା ସମୟରେ ତାଙ୍କ ଦାଢ଼ିରେ ଟିକିଏ ନିଆଁ ପକାଇ ଦେଲେ । ଦାଢ଼ି ପୋଡ଼ିଯିବା ସମୟରେ ଆଖୁନ୍‌ଜିଙ୍କ ବ୍ୟଥାକୁ ଭ୍ରୂକ୍ଷେପ ନ କରି ଲେଖକ ଲେଖିଛନ୍ତି, 'ଆ ମେରି ତୋବାରେ, ଆ ମେରି ତୋବାରେ, ଆ ମେରି ତୋବାରେ କହି ମିଆଁ ଘରଯାକ ଡ଼ିଆଁ ମାରି ନିଆଁ ଲିଭାଉଥାନ୍ତି । ଲଙ୍କା ପୋଡ଼ିବାବେଳେ ହନୁମାନ ମୁହଁରେ ନିଆଁ ଲାଗିବାରୁ କିପରି ଦିଶୁଥିଲା, ମହର୍ଷି ବାଲ୍ମୀକ ସେ କଥା ଖୋଲସା କରି ଲେଖି ନାହାନ୍ତି । ତେଣୁ ଆମ୍ଭେମାନେ ସେ କଥାଟା ଉଲ୍ଲେଖ କରିବା ଯୁକ୍ତିସଙ୍ଗତ ନୁହେଁ ବୋଲି ବିବେଚନା କରୁଅଛୁ ।"

ଇଂରେଜୀ ସାହିତ୍ୟର ପ୍ୟାରୋଡ଼ି ବା ଲଳିକାକୁ ଅନୁକରଣ କରି ବଙ୍ଗଳା ସାହିତ୍ୟରେ ହାସ୍ୟରସ ସୃଷ୍ଟି କରିବାର ଚେଷ୍ଟା କରାଯାଇଥିଲା । ଏଥିପାଇଁ ବଙ୍କିମଚନ୍ଦ୍ର, ରବୀନ୍ଦ୍ରନାଥ, ସତୀଶଚନ୍ଦ୍ର ପ୍ରଭୃତି ଉଲ୍ଲେଖଯୋଗ୍ୟ । ଫକୀରମୋହନ ବଙ୍କିମଚନ୍ଦ୍ରଙ୍କ ପଦାନୁସରଣ କରି ଅନେକ ଲଳିକା ସୃଷ୍ଟି କରିଛନ୍ତି । ଛମାଣ ଆଠଗୁଣ୍ଠରେ ବୁଢ଼ୀ ମଙ୍ଗଳା ପ୍ରସଙ୍ଗରେ ସେ ଲେଖିଛନ୍ତି ।

"ଯା ଦେବୀ ବୃକ୍ଷ ମୂଳେଷୁ ଶିଳାରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋ ନମଃ ।
ମୃତ୍ତିକାଶ୍ଚ ଗଜାରୂଢ଼ା ବନ୍ଧ୍ୟାସ୍ତୁଃ ପୁତ୍ର ଦାୟିନୀ
କାନ୍ତୀ ସଂହାରିଣୀ ଦେବୀ ନାରାୟଣୀ ନମୋଃସ୍ତୁତେ ।"

ପୁଣି ଚମ୍ପାର ରୂପବର୍ଣ୍ଣନ ସମ୍ପର୍କରେ—

"କଜ୍ଜ୍ୱଳ ପୂରିତ ଲୋଚନ ଭାଲେ
ଗୁଣ୍ଡି ମିଶା ଖିଲ୍ଲୀ ଗୁଞ୍ଜିତ ଗାଲେ
ତେଲ ହରଦ୍ରା ବୋଳିତ ଦେହେ
କୁକୁରବ ଶୀଘ୍ରଂ ଧାବନ୍ତି ଗେହେ ।"

ପୁଣି ଛମାଣ ଆଠଗୁଣ୍ଠରେ ବ୍ରାହ୍ମଣମାନଙ୍କର ଅଧୋଗତି ପ୍ରସଙ୍ଗରେ ଲେଖିଛନ୍ତି—

"ଶୁଣ ପଶ୍ଚିମ ନରନାଥ । ତାମ୍ପଡ଼ା ଶୁଖୁଆ ପଖାଳଭାତ ॥
ଗି—ଅକ୍ଷର ବବର୍ଜିତ । ଚିତା ପଇତାଦ୍ଧ ଶୋଭିତ ॥
ବଳ ବାଣ୍ଟୁବାକୁ ଆଗ । ଦହି ଚଡ଼ାକୁ ବାଘ ॥
ସନ୍ଧ୍ୟା ଗାୟତ୍ରୀ ଧ୍ୟାନ । ବିଲରୁ ଚିପନ୍ତି ମୀନ ॥
ପୋଥିରୁ ନ ଫିଟେ ଡୋର । ଯଜମାନ ଗୃହଳ ଚୋର ॥
ସଭାରେ ନ ଫିଟେ ପାଟି । ନାମଟି ସୁନ୍ଦର ତ୍ରିପାଠୀ" ॥

ଏହିପରି ଭାବରେ ଦେଖିଲେ ଫକୀରମୋହନଙ୍କ ସାହିତ୍ୟରେ ହାସ୍ୟରସର ଅବାରିତ ଧାରା ଯେ କୌଣସି ପାଠକର ହାସ୍ୟ ଉଦ୍ରେକ କରିବା ସଙ୍ଗେ ସଙ୍ଗେ ଫକୀରମୋହନଙ୍କ ସୃଷ୍ଟିନୈପୁଣ୍ୟର ପରିଚୟ ହୋଇଥାଏ ।

## ( ଚ ) ଫକୀରମୋହନଙ୍କ ସାହିତ୍ୟରେ ସମାଜ ଚିତ୍ର ।

ଆଧୁନିକ ଓଡ଼ିଆ ସାହିତ୍ୟରେ ରାଧାନାଥ, ମଧୁସୂଦନ, ନନ୍ଦକିଶୋର, ଗଙ୍ଗାଧର ଓ ଫକୀରମୋହନ ଏକ ସମୟରେ

ସାହିତ୍ୟ-ସାଧନା କରୁଥିଲେ ହେଁ ଓଡ଼ିଆର ସମାଜ ପ୍ରତି ଓ ସମସ୍ୟା ପ୍ରତି କେବଳ ଫକୀରମୋହନ ସଚେତନ ଥିଲେ । ତାଙ୍କର ଉପନ୍ୟାସ ଏବଂ କ୍ଷୁଦ୍ରଗଳ୍ପଗୁଡ଼ିକରେ ଓଡ଼ିଆ ସମାଜର ଚିତ୍ର ପ୍ରତ୍ୟେକ ଛତ୍ରରେ ଦେଖିବାକୁ ମିଳିଥାଏ ।

ଛମାଣ ଆଠଗୁଣ୍ଠ ଉପନ୍ୟାସରେ ଲେଖକ କଥାବସ୍ତୁର ଗତି ସହିତ ସମାଜରେ ଥିବା ପରମ୍ପରା ଓ କୁସଂସ୍କାର ଚିତ୍ର ଦେବାକୁ ଭୁଲି ନାହାନ୍ତି । ରାମଚନ୍ଦ୍ର ମଙ୍ଗରାଜ ଜଣେ ସ୍ୱାର୍ଥଲିପ୍‌ସୁ ପ୍ରତିପତ୍ତିଶାଳୀ ବ୍ୟକ୍ତି ହେବାକୁ ଯାଇ ସମାଜରେ ଏକ ଉଚ୍ଚସ୍ଥାନ ଅଧିକାର କରି ବସିଛନ୍ତି । ତାଙ୍କର ବ୍ୟକ୍ତିଗତ ଜୀବନରେ ସମାଜର ପ୍ରଭାବ ଯେତିକି ଅନୁଭୂତ ହୁଏ, ତାଠାରୁ ଅଧିକ ଅନୁଭୂତ ହୁଏ ସମାଜକୁ ଚଳାଇବା ନିମିତ୍ତ ତାଙ୍କର କାର୍ଯ୍ୟକଳାପରୁ । ରକ୍ଷଣଶୀଳ ହିନ୍ଦୁ ସମାଜରେ କୁସଂସ୍କାରର ମାତ୍ରା ଏତେ ବେଶୀ ଯେ, ପିଆଜମିଶା କୋବି ତରକାରୀ ଖାଇଥିବାରୁ ରାମଚନ୍ଦ୍ର ମଙ୍ଗରାଜ ତାଙ୍କର ଜଣେ ଯଜମାନ ଭାଇ ଶ୍ୟାମ ମଲ୍ଲିକଙ୍କଠାରୁ ୧୫ ମାଣ ଜମି ନେଇ ତାଙ୍କୁ ଜାତିରେ ମିଶାଇ ଥିଲେ । ଜାତିଆଣ ପ୍ରଥାର ଦୋହାଇ ଦେଇ ଭଣ୍ଡ ସମାଜପତିମାନେ କି ଭଳି ଲାଭ ଉଠାନ୍ତି, ଏହା ତାହାର ଉଦାହରଣ । ଆମ ସମାଜରେ ଦରିଦ୍ର, ନିମ୍ନେଷିତର ସ୍ଥାନ ବିଷୟରେ ଚିନ୍ତାକଲେ ଅନେକ ସମୟରେ ଦୁଃଖିତ ହେବାକୁ ପଡ଼େ । ଶାରିଆ, ଭଗିଆ ଏଇ ସମାଜର ଦୁଇଟି ସରଳ ନିଷ୍ପାପ ଓ ଆଶ୍ରୟହୀନ ଚରିତ୍ର । ତାଙ୍କର ଜମିଟିକୁ ହାତ କରିବାଲାଗି ମଙ୍ଗରାଜଙ୍କ ଚକ୍ରାନ୍ତ ଲକ୍ଷ୍ୟ କରିବାର କଥା । ସେ ଚମ୍ପାକୁ ଅସ୍ତ୍ରରୂପେ ପ୍ରୟୋଗ କରି ଶାରିଆକୁ ସନ୍ତାନ ଜନ୍ମ ହେବାର ବାସନା ଦେଖାଇ ଠାକୁରାଣୀଙ୍କ ପୂଜାଲାଗି ଅର୍ଥର ଆବଶ୍ୟକତା ଦୃଷ୍ଟିରୁ ମଙ୍ଗରାଜଙ୍କ

ଦ୍ୱାରସ୍ଥ ହୋଇଛନ୍ତି ଭଗିଆ । ମଙ୍ଗରାଜଙ୍କ ଚକ୍ରାନ୍ତ କାର୍ଯ୍ୟରେ ପରିଣତ ହୋଇଛନ୍ତି । ମୂର୍ଖ, ଅଶିକ୍ଷିତ ଶ୍ରେଣୀର ଲୋକଙ୍କୁ ଦେବଦେବୀ ବା ଧର୍ମର ଦୁହାଇ ଦେଇ ଏ ସମାଜରେ କିପରି ଭାବରେ ଧ୍ୱଂସପଥକୁ ଠେଲି ଦିଆଯାଇଛି ଏହାହିଁ ତାହାର ଉଦାହରଣ ।

ବାଲ୍ୟବୈଧବ୍ୟ ପରେ ଏ ସମାଜରେ ନାରୀର ଜୀବନର କୌଣସି ମୂଲ୍ୟ ନାହିଁ । ଯେ ଥରେ ବିଧବା ହେଲା, ସାରା ଜୀବନ ତାକୁ ଯେପରି ଅବସ୍ଥାରେ ଛାଡ଼ି ଦିଆଯାଏ ସେ ଅବସ୍ଥା ତାକୁ କୁକର୍ମ କରିବାକୁ ବାଧ୍ୟ କରେ । ସେହିପରି ବାଲ୍ୟବିଧବା ମରୁଆ ଲଳିତା ଦାସ ବାବାଜୀଙ୍କ ସଙ୍ଗରେ ଆସି ତେଲଙ୍ଗା ବଜାରରେ ଅବସ୍ଥାନ କରୁଥିବା ସମୟରେ ମଙ୍ଗରାଜଙ୍କ ସହିତ ତାଙ୍କ ଘରକୁ ଯାଇ ନିଜର ଆସନ ମାଡ଼ି ବସିଛି । ଏଥିରୁ ଜଣାଯାଏ ବାବାଜୀ-ବେଶୀ କେତେକ ଭଣ୍ଡ ପ୍ରଚାରକ ସମାଜର ଏହି ସୁବିଧା ନେଇ ନାରୀମାନଙ୍କୁ ପଣ୍ୟଦ୍ରବ୍ୟରୂପେ ବ୍ୟବସାୟ କରିବାରେ ଲିପ୍ତ ।

ଗାଁ'ର ପୋଖରୀକୂଳ ଫକୀରମୋହନଙ୍କ ଲେଖାରେ ଅତି ଜୀବନ୍ତ ଭାବରେ ବର୍ଣ୍ଣିତ । ଗାଁର ସ୍ତ୍ରୀଲୋକମାନେ ସ୍ନାନନିମନ୍ତେ ପୋଖରୀତୁଠକୁ ଆସି ଏକତ୍ର ହୁଅନ୍ତି । ଏହି ଏକତ୍ର ଅବସ୍ଥାରେ ସେମାନଙ୍କ ମଧ୍ୟରେ ଯେଉଁ ଆଲୋଚନା ହୁଏ, ତାହା ସାରା ଗାଁର ଭଲମନ୍ଦ ହାନିଲାଭକୁ ନେଇ ହୋଇଥାଏ । ଏହି ଆଲୋଚନା ଭିତରେ ପରଛିଦ୍ରର ଅନ୍ୱେଷଣ ପ୍ରଧାନ ସ୍ଥାନ ଗ୍ରହଣ କରେ । ପୁଣି ଅନେକ ସମୟରେ ଅନେକ କଥା ତିଳରୁ ତାଳର ଆକାର ଧାରଣ କରେ । ନାରୀମାନଙ୍କର ଏହି ପ୍ରକାର ଆଲୋଚନା ପ୍ରତ୍ୟକ୍ଷରେ ଯେ ନ ଶୁଣିଥିବ ସେ ଫକୀରମୋହନଙ୍କର ଏ ବର୍ଣ୍ଣନାର ମୂଲ୍ୟ ହୃଦୟଙ୍ଗମ କରି ପାରିବ ନାହିଁ ।

ସାଧାରଣତଃ ମଫସଲ ଗ୍ରାମମାନଙ୍କରେ ବିଶେଷ ଭାବରେ ସଂକୀର୍ତ୍ତନର ପ୍ରଚଳନ ଦେଖାଯାଏ । ପ୍ରତ୍ୟେକ ଗ୍ରାମର ସଂକୀର୍ତ୍ତନ ଆଖଡାଦଳ ଥାଏ । ଗୌଡ଼ୀୟ ସଂପ୍ରଦାୟର ଧର୍ମମତବାଦରେ ପ୍ରଭାବିତ ହୋଇ ଗୌଡ଼ୀୟ କୀର୍ତ୍ତନ ବା ନବଦ୍ୱୀପ କୀର୍ତ୍ତନ ଆମ ସମାଜରେ ପ୍ରଚଳିତ । ବିଭିନ୍ନ ଗ୍ରାମର ବିଭିନ୍ନ ସଂକୀର୍ତ୍ତନଦଳ ନିଜର ଶ୍ରେଷ୍ଠତା ବଜାୟ ରଖିବାକୁ ଚେଷ୍ଟା କରନ୍ତି । ଯୁଗଳ କିଶୋର ମନ୍ଦିରରେ ହରିଲୁଟ୍ ସମୟରେ ବିଭିନ୍ନ ସଂକୀର୍ତ୍ତନଦଳ-ମାନଙ୍କର ସଂକୀର୍ତ୍ତନ କରିବାର ବର୍ଣ୍ଣନା ଫକୀରମୋହନ ଅତି ନିଖୁଣ ଭାବରେ ଦେଇଛନ୍ତି ।

ସମାଜରେ ବ୍ରାହ୍ମଣମାନଙ୍କ ପ୍ରତି ଫକୀରମୋହନ ଅତ୍ୟନ୍ତ ନିଷ୍ଠୁର ଭାବରେ ବାକ୍ୟବାଣ ପ୍ରୟୋଗ କରିଛନ୍ତି । ଯେଉଁ ସମାଜରେ ବ୍ରାହ୍ମଣ ଥିନେ ଶୀର୍ଷ ସ୍ଥାନ ଅଧିକାର କରିଥିଲେ, ସେ ସମାଜରେ ବ୍ରାହ୍ମଣର ଦୁର୍ଦ୍ଦଶା ଲକ୍ଷ୍ୟ କରିବାର କଥା । ଆଜି କାଲି ବ୍ରାହ୍ମଣମାନଙ୍କର ଶାସ୍ତ୍ରଜ୍ଞାନରେ ପ୍ରବେଶ ନାହିଁ । ନାସ ଶୁଙ୍ଘା, ଭାଙ୍ଗ ବଟା ପ୍ରଭୃତି ଭିତରେ ସେମାନେ ନିଜର ଜାତିଆଣିତାକୁ ବଜାୟ ରଖିଛନ୍ତି । ବ୍ରାହ୍ମଣ-ଭୋଜନ ସମ୍ବାଦ ପାଇଲେ ଦଳଦଳ ହୋଇ ଏମାନେ ଉଠିଯାନ୍ତି । ଆଜିର ବ୍ରାହ୍ମଣ ବିଲ ବାଣ୍ଟିବାରେ ଧୁରନ୍ଧର, ବିଲରୁ ମାଛ ମାରିବାରେ ଧୁରନ୍ଧର, ପଣ୍ଡିତ ସଭାରେ ସେମାନଙ୍କର ସ୍ଥାନ ନାହିଁ ।

କେବଳ ବ୍ରାହ୍ମଣ ନୁହନ୍ତି, କାରଣ ଖଣ୍ଡାୟତ, ଗଉଡ଼ କୌଣସି ଜାତି ଫକୀରମୋହନଙ୍କ ବାକ୍ୟବାଣରୁ ରକ୍ଷା ପାଇ ନାହାନ୍ତି । ମାମୁଁ ଉପନ୍ୟାସରେ ଦାଶରଥି ଦାସ ମୋହରିରଙ୍କ କଥା କହିବାକୁ ଯାଇ କରଣ ଜାତି ଉପରେ ଚେଉ ଗଣି ପଇସା

ରୋଜଗାର କରେ ତାହା ପ୍ରକାଶ କରିଛନ୍ତି । ଖଣ୍ଡାୟତମାନେ ଅପର ସାମାନ୍ୟ କଥାରୁ ଉତ୍ତେଜିତ ହୋଇ ନିଜର ବାହୁବଳ ଦେଖାଇବାକୁ ପଛାନ୍ତି ନାହିଁ ଏବଂ ସେହି ହେତୁରୁ ସେମାନେ ଆଜି ଅପର ଦୁର୍ଦ୍ଦଶାଗ୍ରସ୍ତ ହୋଇଛନ୍ତି, ତାହା ଫକୀରମୋହନ ଦେଖାଇବାକୁ ଭୁଲି ନାହାନ୍ତି । ଗଉଡ଼ମାନଙ୍କ ବିଷୟରେ ସେ କହିଛନ୍ତି, ଯେତେ ପଇସା ଦେଲେ ହେଁ ଦୁଧରେ ପାଣି ମିଶାଇବା ତାଙ୍କର ଧର୍ମ । ଏ ଧର୍ମ ସାତ ପୁରୁଷ ଧରି ପରମ୍ପରାରେ ସେମାନଙ୍କ ଜାତିରେ ରକ୍ଷିତ ହୋଇ ଆସୁଅଛି । ଏହିପରି ଭାବରେ ସମାଜରେ ବିଭିନ୍ନ ଜାତି ନିଜର ଜାତିଗୁଣକୁ ନେଇ ଗର୍ବ କଲାବେଳେ ଫକୀରମୋହନ ସେମାନଙ୍କର ଯଥାର୍ଥ ରୂପ ଦେବାରେ ହେଳା କରି ନାହାନ୍ତି ।

ସେତେବେଳେ ସମାଜରେ ଇଂରେଜ ରାଜତ୍ୱ ସମୟରେ ପୋଲିସ୍‌ମାନଙ୍କ ପ୍ରତିପତ୍ତି ଏ ଦେଶର ସମାଜରେ ସ୍ୱୀକାର୍ଯ୍ୟ । ଚୌକିଦାରଠାରୁ ଆରମ୍ଭ କରି ଦାରୋଗା ପର୍ଯ୍ୟନ୍ତ ଅଶିକ୍ଷିତ ଓଡ଼ିଆ ଆଖିରେ ଗୋଟିଏ ଗୋଟିଏ ମହାବଳୀ ରୂପେ ଦେଖାଯାଆନ୍ତି । ମଫସଲର ଅଶିକ୍ଷିତ ଲୋକଙ୍କ ମନରେ ଧାରଣା ଥିଲା ଯେ, ପୋଲିସ୍ ଦାରୋଗାଠାରୁ ଆଉ ବଡ଼କାମ କିଛି ନାହିଁ । ତେଣୁ ଜଣେ ବ୍ରାହ୍ମଣ ନିଜ ମୋକଦ୍ଦମାରେ ଜୟଲାଭ କରିବାପରେ ଜଣେ ଡେପୁଟି ମାଜିଷ୍ଟ୍ରେଟ୍‌ଙ୍କୁ ଦାରୋଗା ହେବା ଲାଗି ଆଶୀର୍ବାଦ କରିଛି ।

ପ୍ରାୟଶ୍ଚିତ୍ତ ଉପନ୍ୟାସରେ ଆମ ସମାଜରେ ବିବାହ ପଦ୍ଧତିକୁ ବିଶେଷ ଭାବରେ ସମାଲୋଚନା କରାଯାଇଅଛି । ଜ୍ୟୋତିଷ ଅବଧାନେ ଟିପ୍ପଣୀ ମିଳାଇ ବିଭାଘର ବିଷୟରେ ସିଦ୍ଧାନ୍ତ ଦିଅନ୍ତି । ବର ଏବଂ କନ୍ୟାଙ୍କର ତାହା ପୂର୍ବରୁ ପରିଚୟ ତ ଦୂରର କଥା,

କେବେ ସାକ୍ଷାତ ଘଟି ନ ଥାଏ । ଇଂରେଜ ଶାସନ ଆରମ୍ଭରେ ନବ୍ୟଶିକ୍ଷିତ ଯୁବକ ସମାଜ ଏ ପ୍ରଥାର ନିନ୍ଦାବାଦ କରିବାକୁ ଯାଇ ସଂସ୍କାରଲିପ୍ସୁ ହୋଇଛନ୍ତି । ଏହାର ଉଦାହରଣ ଗୋବିନ୍ଦ, ରାଜିବଲୋଚନ ଓ କମଳଲୋଚନଙ୍କ ଆଲୋଚନା-ସନ୍ଦର୍ଭରେ ହିନ୍ଦୁ ବିବାହ ପ୍ରଥା ଉପରେ ଆଲୋଚନା । ବିବାହ ପ୍ରଥାରେ ଜାତିଭେଦ ଗୋଟାଏ ଅଯଥା କୁସଂସ୍କାର ବୋଲି ସେମାନଙ୍କର ମତ । ଆମ ସମାଜରେ ଜ୍ୟୋତିଷୀମାନେ ପ୍ରକୃତ ଜ୍ୟୋତିଷ ବିଦ୍ୟା ନ ଜାଣି କପଟର ନିଜକୁ ତ୍ରିକାଳଦର୍ଶୀ ରୂପେ ପରିଚିତ କରନ୍ତି, ତାର ଉଦାହରଣ ଏଇ ପ୍ରାୟଶ୍ଚିତ୍ତ ଉପନ୍ୟାସରେ ଦିଆଯାଇଅଛି । ଗୋବିନ୍ଦ ଓ ଇନ୍ଦୁମତୀଙ୍କ ବିବାହ ଉପଲକ୍ଷେ ଆତସବାଜି ଫୁଟିବାର ପ୍ରଚଣ୍ଡ ଶବ୍ଦକୁ ଖଡ଼ିରତ୍ନେ ଭୂମିକମ୍ପର ସୂଚନା ରୂପେ ଗ୍ରହଣ କରି ସେ ବିଷୟରେ ଏକ ବିସ୍ତୃତ ଗଣନାର ବିବରଣୀ ଦେଇଛନ୍ତି ।

ଲଛମା ଉପନ୍ୟାସ ଏକ ସାମାଜିକ ଉପନ୍ୟାସ ନ ହେଲେ ହେଁ ଏକ ଐତିହାସିକ ଉପନ୍ୟାସ ରୂପେ ସ୍ୱୀକୃତ । ଲଛମା ଉପନ୍ୟାସର ଘଟଣାକାଳ ଯେଉଁସମୟରେ ବର୍ଣ୍ଣିତ, ସେ ସମୟର ସାମାଜିକ ଚିତ୍ର ସେଥିରେ ଯଥେଷ୍ଟ ଭାବରେ ଅଛି । ମାମୁଁ ଉପନ୍ୟାସରେ ସେହିପରି ସମାଜର ଚିତ୍ର ଅତି ସୁସ୍ପଷ୍ଟ । ପ୍ରାୟଶ୍ଚିତ୍ତ ଉପନ୍ୟାସରେ ନବଶିକ୍ଷିତ ଯୁବକ ସମାଜର ପ୍ରକୃଷ୍ଟ ରୂପ ଦେଖା ଦେଇଛି । ଏ ସମସ୍ତ ଉପନ୍ୟାସରେ ସମାଜ ଚିତ୍ର ସହିତ ଫକୀରମୋହନଙ୍କର ସଂସ୍କାରଲିପ୍ସା ଅତି ଘନିଷ୍ଠ ଭାବରେ ଜଡ଼ିତ ।

ଫକୀରମୋହନଙ୍କର କ୍ଷୁଦ୍ରଗଳ୍ପଗୁଡ଼ିକରେ ସମାଜ ଚିତ୍ର ଦେବାର ଯଥେଷ୍ଟ ଅବକାଶ ନ ଥିଲେ ହେଁ ଯେତିକି ଅଛି, ତା କମ୍ ନୁହେଁ । ରେବତୀ ଗଳ୍ପରେ ଫକୀରମୋହନ ସମସାମୟିକ ସମାଜରେ

ସ୍ତ୍ରୀଶିକ୍ଷା ପ୍ରତି କି ପ୍ରକାର ମନୋବୃତ୍ତି ଥିଲା, ତାହାର ଏକ ଚିତ୍ର ଦେଇଛନ୍ତି । ଝିଅମାନେ ପାଠ ପଢ଼ିଲେ, ଦାଣ୍ଡକୁ ବାହାରିଲେ ଘରକୁ ବିପତ୍ତି ପଡ଼େ ବୋଲି ଯେଉଁ କୁସଂସ୍କାର ସେତେବେଳେ ସମାଜରେ ଥିଲା ତାହା ଏହି ଗଳ୍ପରେ ଚିତ୍ରିତ । ରାଣ୍ଡିପୁଅ ଅନନ୍ତା ଗଳ୍ପରେ ସୁବଳ ମହାକୁଡ଼ ପରିବାର ବିଷୟରେ ବର୍ଣ୍ଣନା କରିବାକୁ ଯାଇ ଫକୀରମୋହନ ଗୋଟିଏ ଗ୍ରାମର ନିମ୍ନଶ୍ରେଣୀର ଚିତ୍ର ଦେଇଛନ୍ତି । ସମାଜରେ ଶିକ୍ଷାର ସ୍ଥାନ କିପରି ଥିଲା, ଏହି ଗଳ୍ପରେ ବର୍ଣ୍ଣିତ ଚାଟଶାଳୀରୁ ତାହାର ପରିଚୟ ମିଳେ । ଡାକମୁନସି ଗଳ୍ପରେ ନୂଆ ଶିକ୍ଷିତ ଯୁବକର ମନୋବୃତ୍ତିରୁ ବହୁତ କିଛି ଜାଣିବାର ଅଛି । ଗାରୁଡ଼ିମନ୍ତ୍ର ଗଳ୍ପରେ ସାପକାମୁଡ଼ିବା ପରେ ମନ୍ତ୍ରଝାଡ଼ିବା ସମୟରେ ବୋହୂ ବିଷୟରେ ଫକୀରମୋହନ ଯେଉଁସବୁ କଥା କହିଛନ୍ତି, ତାହା ସେସମୟର ରକ୍ଷଣଶୀଳ ସମାଜରେ ବୋହୂର ସ୍ଥାନ ବିଷୟରେ ଅନେକ କଥା ପ୍ରକାଶ କରେ । ପତି-ପତ୍ନୀର ସମ୍ବନ୍ଧ ସମାଜରେ ଗୃହସ୍ଥାଶ୍ରମର ମୂଳଭିତ୍ତି ହେଲେ ହେଁ ଅବସ୍ଥାର ଗୁପରେ ଏହି ସମ୍ବନ୍ଧ ଭିତରେ ଦୁର୍ବିପାକ ମଧ୍ୟ ଦେଖାଯାଇଥାଏ । ପେଟେଣ୍ଟ ମେଡ଼ିସିନ୍ ଗଳ୍ପରେ ମଦ୍ୟପ ପତିକୁ ଠିକ୍ ବାଟକୁ ଆଣିବାପାଇଁ ସୁଲୋଚନାଙ୍କର ଚେଷ୍ଟା ଏକ ବ୍ୟତିକ୍ରମ ହେଲେହେଁ ଅବସ୍ଥା ଦୃଷ୍ଟିରୁ ଏବଂ ପରିଣତି ଦୃଷ୍ଟିରୁ ଏହା ଯେପରି ଆକାର ଧାରଣ କରିଛି, ଏଥିରେ ସାମାଜିକତା କ୍ଷୁଣ୍ଣ ହେଲେହେଁ ଉଭୟଙ୍କ ଜୀବନପାଇଁ ଆଶୀର୍ବାଦ ସଦୃଶ କାମ କରିଅଛି । ଧୂଳିଆ ବାବା ଗଳ୍ପରେ ଆମ ସମାଜରେ ଅନ୍ଧବିଶ୍ୱାସ ଏବଂ ପରମ୍ପରା ପ୍ରଭାବରୁ ଭଣ୍ଡ ସନ୍ନ୍ୟାସୀମାନେ କିପରି ଲାଭ ଉଠାନ୍ତି, ତାର ପ୍ରମାଣ ମିଳିଛି । ରାମ ସାହୁ ଓ ଶ୍ୟାମ ସାହୁ ଦୁଇଭାଇଙ୍କର କଳିରୁ ଲାଭ ଉଠାଇବାକୁ ଯାଇ ଧୂଳିଆବାବା ଶେଷରେ ବହୁଧନ ଆଶାକରି ମୃତ୍ୟୁମୁଖରେ

ଷଡ଼ଯନ୍ତ୍ର । ଆମମାନଙ୍କର ଅଶିକ୍ଷା ଆମ ଦେଶର ଗାଁ ଗହଳରେ ଅନେକ ସମୟରେ କୁଫଳ ଘଟାଇବାର ପ୍ରଧାନ କାରଣ ।

ଫକୀରମୋହନଙ୍କ ସମଗ୍ର ରଚନାରେ ଓଡ଼ିଆ ଜୀବନର ସାମାଜିକତା ଏତେ ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଅଛି ଯେ, ଆମର ଆଧୁନିକ ଯୁଗର କବି ବା ଲେଖକମାନଙ୍କ ମଧ୍ୟରେ ଫକୀରମୋହନ ଥିଲେ ଏକମାତ୍ର ସ୍ରଷ୍ଟା, ଯେ କି ଓଡ଼ିଶାର ଗଣଜୀବନଠାରୁ ଆରମ୍ଭକରି ଅଭିଜାତ ଜୀବନ ପର୍ଯ୍ୟନ୍ତ ସମସ୍ତ ସହିତ ଘନିଷ୍ଠ ଭାବରେ ପରିଚିତ ଥିଲେ ।

## ( ୭ )ଫକୀରମୋହନଙ୍କ ସାହିତ୍ୟରେ ଚରିତ୍ରଚିତ୍ରଣ ।

ଫକୀରମୋହନଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟର ବିକାଶ କହିଲେ ମୁଖ୍ୟତଃ ଓଡ଼ିଆ କାବ୍ୟ କବିତାର ବିକାଶକୁ ବୁଝାଯାଉ ଥିଲା । ଫକୀରମୋହନଙ୍କ ପୂର୍ବରୁ ପଦ୍ୟସାହିତ୍ୟର ସୃଷ୍ଟି ହେଲେହେଁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଗଦ୍ୟ ସାହିତ୍ୟ ଯଥୋଚିତ ବୈଶିଷ୍ଟ୍ୟ ଲାଭ କରିପାରି ନଥିଲା । ପଦ୍ମମାଳୀ ଉପନ୍ୟାସ ଫକୀରମୋହନଙ୍କ ପୂର୍ବରୁ ଲେଖାଯାଇଥିଲେହେଁ ତାହା ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ବିଶେଷ ରୂପପ୍ରଦାନ କରିନାହିଁ । ଫକୀରମୋହନଙ୍କ ପୂର୍ବରୁ ପଦ୍ୟ ବା ଗଦ୍ୟ ସାହିତ୍ୟରେ ଯେଉଁ ଚରିତ୍ରମାନଙ୍କର ଆତ୍ମପ୍ରକାଶ ଦେଖିବାକୁ ମିଳେ, ସେ ଚରିତ୍ରଗୁଡ଼ିକ ସମାଜର ଅଭିଜାତ ଶ୍ରେଣୀର । ସମାଜର ନିମ୍ନସ୍ତରର ବ୍ୟକ୍ତିର ଜୀବନକୁ କେନ୍ଦ୍ର କରି କୌଣସି ରଚନା ଫକୀରମୋହନଙ୍କ ସମୟ ପର୍ଯ୍ୟନ୍ତ ଉଲ୍ଲେଖଯୋଗ୍ୟ ଭାବରେ ଦେଖାଦେଇ ନାହିଁ । ତେଣୁ ସମାଜର ସବୁ ଶ୍ରେଣୀର ଚରିତ୍ରମାନଙ୍କର ଜୀବନର ସୁଖ ଦୁଃଖ, ଭଲ ମନ୍ଦକୁ ପ୍ରଥମଥର ପାଇଁ ଆମ ଆଗରେ

ଦେଖାଇ ଦେଇଛନ୍ତି ଫକୀରମୋହନଙ୍କ ସାହିତ୍ୟ । ୧୮୯୭ ସାଲରେ ପ୍ରଥମ କରି ଯେତେବେଳେ ଛମାଣ ଆଠଗୁଣ୍ଠ ଉପନ୍ୟାସ ଆତ୍ମପ୍ରକାଶ କଲା, ସେତେବେଳେ ଓଡ଼ିଆ ପାଠକ ଶାରିଆ ଭଗିଆର ଜୀବନ-ଠାରୁ ଆରମ୍ଭ କରି ରାମଚନ୍ଦ୍ର ମଙ୍ଗରାଜଙ୍କ ପର୍ଯ୍ୟନ୍ତ ବିଭିନ୍ନ ବ୍ୟକ୍ତିଙ୍କର ଚରିତ୍ରର ଚିତ୍ର ଦେଖିବାକୁ ପାଇଲା । ପୁରୁଷ ଏବଂ ନାରୀ ଉଭୟ ଚରିତ୍ର ଚିତ୍ରଣରେ ଫକୀରମୋହନଙ୍କ ପାରଦର୍ଶିତା ଲକ୍ଷ୍ୟ କରିବାର କଥା ।

## ପୁରୁଷ—

ଫକୀରମୋହନଙ୍କ ପୁରୁଷ ଚରିତ୍ର ସୃଷ୍ଟିରେ ରାମଚନ୍ଦ୍ର ମଙ୍ଗରାଜ ଏକ ସାର୍ଥକ ସୃଷ୍ଟି । ଏହି ଚରିତ୍ରର ଯଥାର୍ଥ ରୂପ ଦେଖାଇବାକୁ ଯାଇ ଫକୀରମୋହନ ମଙ୍ଗରାଜଙ୍କର କାର୍ଯ୍ୟକଳାପକୁ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ ରାମଚନ୍ଦ୍ର ମଙ୍ଗରାଜ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିରେ ଏକ ସମ୍ପୂର୍ଣ୍ଣ ଧାନ୍ । ମଙ୍ଗରାଜଙ୍କ ଏକାଦଶୀ ପାଳନ ଧର୍ମକୁ ଆଖିଠାରି ମାରିବାର ଏକ ବିଚିତ୍ର ମଣ୍ଡ । ବିଲରେ ଧାନଗଛ କମ୍ ଥିବା ଯୋଗୁଁ ଅନ୍ୟର ବେଶୀ ଧାନଗଛ ଥିବା ବିଲକୁ ଆଖିପକାଇ ଉପଦେଶ ଦିଅନ୍ତି ଯେ, ଗଛ ବହଳିଆ ହେଲେ ଧାନ ଫଳିବ ନାହିଁ । ଖାଲି ଏତିକି ଉପଦେଶ ନୁହେଁ, ଲୋକ ଲଗାଇ ଧାନଗଛ ଉପାଡ଼ି ନେଇ ନିଜ ଜମିରେ ରୋଇ ଦିଅନ୍ତି । କେବଳ ଯେ ଦରିଦ୍ର କୃଷୀର ବିଲରୁ ଧାନଗଛ ଅପହରଣ କରି ନେଇ ନିଜକୁ ବଡ଼ କରିବାର ପ୍ରୟାସ ସେ କରିଛନ୍ତି ତା ନୁହେଁ, କଳେବଳେ କୌଶଳେ ଚମ୍ପାକୁ ଠାକୁରାଣୀ ମାଉସୀ ସଜାଇ ବାଘସିଂହ ବଂଶର ଧ୍ୱଂସ ସାଧନ କରିବାରେ ସେ ଆତ୍ମପ୍ରସାଦ ଅନୁଭବ କରିଛନ୍ତି । ଶାରିଆ ଏବଂ ଭଗିଆର ଛମାଣ

ଆଠଗୁଣ୍ଠ ଜମି ଉପରେ ତାଙ୍କର ଯେଉଁ ଲୋଲୁପ ଦୃଷ୍ଟି ପଡ଼ିଥିଲା, ତାହାକୁ ମଧ୍ୟ ସେ କାର୍ଯ୍ୟରେ ପରିଣତ କରିଛନ୍ତି । ଚମ୍ପାର ସାହାଯ୍ୟରେ ସରଳ-ବିଶ୍ୱାସୀ ଶାରିଆର ପ୍ରାଣରେ ନାରୀ ସୁଲଭ ଆଶା ଟିକିଏ ଭରିଦେଇ ଠାକୁରାଣୀଙ୍କର ପୂଜା କରିବା ନିମିତ୍ତ ଶାରିଆକୁ ପ୍ରବର୍ତ୍ତନା ଦିଆଯାଇଛି । ଏ ପୂଜା ନ କଲେ ଶାରିଆର ସ୍ୱାମୀର ଜୀବନ ହାନି ହେବ—ଏ ପ୍ରକାର ଧମକ ମଧ୍ୟ ଶାରିଆକୁ ଦିଆଯାଇଛି । ଠାକୁରାଣୀଙ୍କ ପୂଜା ନିମିତ୍ତ ଅର୍ଥର ଆବଶ୍ୟକତା ଦୃଷ୍ଟିରୁ ଛମାଣ ଆଠଗୁଣ୍ଠ ଜମି ମଙ୍ଗରାଜଙ୍କର କରଗତ ହୋଇଛି । ସାରାଜୀବନ ପର ଧନ ଏବଂ ପରର ସମ୍ପତ୍ତି ଉପରେ ଲୋଲୁପ ଦୃଷ୍ଟି ପକାଇ ମଙ୍ଗରାଜ ପ୍ରତିପତ୍ତିଶାଳୀ ବ୍ୟକ୍ତି ହିସାବରେ ନିଜର ସମ୍ମାନ ବଜାୟ ରଖିବାକୁ ଚେଷ୍ଟା କରିଥିଲେ । ତାହା ରକ୍ଷିତ ହୋଇପାରି ନାହିଁ । ସେହି ଛମାଣ ଆଠଗୁଣ୍ଠ ଜମି ଦେଇଛି ମଙ୍ଗରାଜଙ୍କୁ ଚରମ ଶାସ୍ତି । ଜୀବନର ଶେଷ ଅବସ୍ଥାରେ ଜେଲଖାନା ଭିତରେ ସେ ଦେଖିଛନ୍ତି ମୃତ୍ୟୁର ବିଭୀଷିକା । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଯେତେବେଳେ ତାଙ୍କୁ ଆଣି ଚଉଦ ମୂଳେ ଶୁଆଇ ଦିଆଗଲା, ସେତେବେଳେ 'ଛମାଣ ଆଠଗୁଣ୍ଠ' ଉଚ୍ଚାରଣ କରି ନ ପାରି 'ଥମା ଆଗୁ' କହି ଶେଷନିଃଶ୍ୱାସ ତ୍ୟାଗ କରିଛନ୍ତି । ଜୀବନର ସମ୍ପତ୍ତି, ପ୍ରତିପତ୍ତି, ଅନ୍ୟାୟ, ବ୍ୟଭିଚାର, ଅତ୍ୟାଚାର ଏ ସବୁର ଊର୍ଦ୍ଧ୍ୱରେ ଯେ ଗୋଟିଏ ନିୟନ୍ତ୍ରଣକାରୀ ଶକ୍ତି ଅଛି, ସେ କଥା ହିଁ ମନୁଷ୍ୟ ଭାବେ ତାର ଅନ୍ତିମ କାଳରେ ।

ମାମୁଁ ଉପନ୍ୟାସରେ ନାଜର ନଟବର ଦାସ ମଙ୍ଗରାଜଙ୍କ ପରି ନହେଲେ ମଧ୍ୟ ସେହି ଶ୍ରେଣୀର । ଧନ ସମ୍ପତ୍ତିର ମୋହ ତାଙ୍କୁ ଏତେ ଦୂର ଅନ୍ଧ କରିଛି ଯେ, ସେ ନିଜର ନାବାଳକ ଭଣଜାର

ସମ୍ପତ୍ତିକୁ ହସ୍ତାନ୍ତର କରିବାକୁ ପଛେଇ ନାହାନ୍ତି । ଅଶିକ୍ଷିତା ପତ୍ନୀ, ଅଶିକ୍ଷିତ ଶ୍ୟାଳକ ଏମାନେ ମଧ୍ୟ ତାଙ୍କୁ ପତନୋନ୍ମୁଖୀ ଅବସ୍ଥାକୁ ଅଗ୍ରସର ହେବା ନିମିତ୍ତ କମ୍ ସାହାଯ୍ୟ କରି ନାହାନ୍ତି । ନଟବର ଦାସଙ୍କର ଜୀବନର ସେହିସବୁ ପ୍ରତିପତ୍ତି, ସବୁ ଅହମିକା ସମୂଳେ ଧୋଇ ହୋଇଯାଇଛି, ଯେତେବେଳେ ସରକାରୀ ଅର୍ଥ ଆତ୍ମସାତ୍ ଅଭିଯୋଗରେ ସେ ଜେଲ ଯାଇଛନ୍ତି । ଜେଲଖାନା ଭିତରେ ଆସିଛି ତାଙ୍କର ଅନୁଶୋଚନା । ସେହିଠାରେ ସେ ସର୍ବଶକ୍ତିମାନଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରିଛନ୍ତି । ନିଜର ଭୁଲ ସେ ନିଜେ ବୁଝିପାରିଛନ୍ତି । ଛମାଣ ଆଠଗୁଣ୍ଠ ଓ ମାମୁଁ ଉଭୟ ଉପନ୍ୟାସରେ ଥିବା ଗୌଣ ଚରିତ୍ରଗୁଡ଼ିକ ଫକୀରମୋହନଙ୍କ ଲେଖନୀରେ ଉତ୍ତମ ରୂପେ ରୂପାୟିତ । ପ୍ରାୟଶ୍ଚିତ୍ତ ଉପନ୍ୟାସରେ ରାଜିବଲୋଚନ, କମଲଲୋଚନ ପ୍ରମୁଖ ଯୁବକଗଣ ଆଧୁନିକ ଶିକ୍ଷାଭିମାନରେ ସଂସ୍କାର ପ୍ରୟାସୀ ହୋଇଛନ୍ତି ।

## ନାରୀ—

ସମାଜରେ ବିଭିନ୍ନପ୍ରକାର ନାରୀ ଦେଖାଦେଲେ ହେଁ ସେମାନଙ୍କୁ ଉପଯୁକ୍ତ ରୂପେ ରୂପାୟିତ କରିବାରେ ଫକୀରମୋହନ ଯଶସ୍ୱୀ ହୋଇଅଛନ୍ତି । ଏ ସଂସାରରେ ଚନ୍ଦ୍ରକଳା ଓ ଚମ୍ପା ପରି ବୁଦ୍ଧିମତୀ ଓ ବିପଜ୍ଜନକ ନାରୀ, ନାକଫୋଡ଼ିଆ ମାଆ ଓ ଜଗା ଫତେସିଂଙ୍କ ମାଆ ପରି କଳହପ୍ରିୟା, ସରସ୍ୱତୀ ଦେବୀଙ୍କ ପରି ପରୋପକାରିଣୀ, ସାଆନ୍ତାଣୀ ( ରାମଚନ୍ଦ୍ର ମଙ୍ଗରାଜଙ୍କ ସ୍ତ୍ରୀ ) ଙ୍କ ପରି ସହିଷ୍ଣୁ ଓ ବିଶାଖା ଦେଈଙ୍କ ପରି ସ୍ୱାର୍ଥପରାୟଣା ନାରୀ ଅନେକ ଦେଖାଯାଆନ୍ତି । ମାମୁଁ ଉପନ୍ୟାସରେ ସରସ୍ୱତୀ ଦେବୀ ଏକ ବିଶିଷ୍ଟ ଚରିତ୍ର । ନିଜର ସ୍ୱାମୀ ନିରୁଦ୍ଦିଷ୍ଟ । ସେ ସନ୍ତାନହୀନା

ଓ ସଂସାରରେ ସେ ବନ୍ଧୁବାନ୍ଧବ ସମ୍ପର୍କହୀନା; ତଥାପି ଏ ସବୁ ପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥାଏ । ଯେ କୌଣସି କାର୍ଯ୍ୟରେ ହେଉନା କାହିଁକି ଦାଶରଥି ଦାସ ଓ ମେନକା ଦେଈ ତାଙ୍କର ପରାମର୍ଶ ନେଉଥିଲେ । ତାଙ୍କର ଏହି ପ୍ରତିପତ୍ତି ଉତ୍ତରରାୟଙ୍କ ଗୃହରେ ମଧ୍ୟ ଦେଖାଦେଇଥିଲା; ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଜମିଦାର ଉତ୍ତରରାୟ ନିଜର ପରିବାର ଓ ଜମିଦାରୀ ପରିଚାଳନା ବିଷୟରେ ସରସ୍ୱତୀଙ୍କ ସହିତ ବରାବର ପରାମର୍ଶ କରୁଥିଲେ । ସେହିପରି ସାଧୁ ସାହୁଙ୍କ ସ୍ତ୍ରୀ ଶ୍ରୀମତୀଙ୍କୁ ଗାଁଯାକ ମା ବୋଲି ଡାକନ୍ତି । ରୁଗ୍‌ଣ, ଦରିଦ୍ର ଓ ଅସହାୟ ବ୍ୟକ୍ତିଙ୍କୁ ସାହାଯ୍ୟ କରିବା ନିମିତ୍ତ ସେ ସର୍ବଦା ତତ୍ପର ଥିଲେ । ତାଙ୍କର ସେ ସ୍ନେହ ମମତା ଓ ହାର୍ଦ୍ଦିକତା ନିଜ ପରିବାରର ସୀମା ଭିତରେ ଆବଦ୍ଧ ନ ରହି ଗୋଷ୍ଠୀର ସୀମା ଭିତରେ ଆବଦ୍ଧ ଥିଲା । ନାଜର ନଟବର ଦାସଙ୍କ ସ୍ତ୍ରୀ ବିଶାଖା ଦେଈ ଥିଲେ ଅର୍ଥଲୋଭୀ, ଅଳଙ୍କାରସର୍ବସ୍ୱା ଓ ଅଭିମାନିନୀ । ଗୁରୁଜନଙ୍କୁ ଭକ୍ତି କରିବା ତାଙ୍କଠାରେ ଦେଖାଯାଏ ନାହିଁ । କେବଳ ଭୋଗ ବିଳାସର ସମ୍ଭାର ଯୋଗାଇବା ନିମିତ୍ତ ସେ ସ୍ୱାମୀଙ୍କଠାରେ ଆସକ୍ତ ଥିଲା ପରି ଜଣାପଡ଼େ । ତାଙ୍କର ଏହି ଆଚରଣ ସ୍ୱାମୀଙ୍କୁ ବିପଦଗ୍ରସ୍ତ କରିଛି ।

ଛମାଣ ଆଠଗୁଣ୍ଠର ସାଆନ୍ତାଣୀ ଚରିତ୍ର ଫକୀରମୋହନଙ୍କ ସୃଷ୍ଟିରେ ଆଦର୍ଶ ସ୍ଥାନୀୟ । ସଂସାରର ପାପ ଭିତରେ ସେ ନିଜକୁ ଜଡ଼ିତ କରନ୍ତି ନାହିଁ । ଧର୍ମପ୍ରାଣା ସେ, ପତିଙ୍କଠାରେ ଥିଲା ତାଙ୍କର ଅଟଳ ଭକ୍ତି । ପରଉପକାର ଥିଲା ତାଙ୍କ ଜୀବନର ବ୍ରତ । ମଙ୍ଗରାଜଙ୍କ ସଂସାରରେ ବିଷାକ୍ତ ବାୟୁମଣ୍ଡଳ ଭିତରେ ସେ ଅତିଷ୍ଠ ହୋଇ ପଡ଼ୁଥିଲେ । ମଙ୍ଗରାଜ ଓ ଚମ୍ପାର ଅତ୍ୟାଚାରରୁ ଅନ୍ୟମାନଙ୍କୁ

ରକ୍ଷା କରିବାକୁ ସେ ଚେଷ୍ଟା କରୁଥିଲେ । ଚମ୍ପା ସମ୍ମୁଖରେ ମଙ୍ଗରାଜଙ୍କ ଦ୍ୱାରା ଅପମାନିତା ହେଲେ ହେଁ ସେ ସବୁକୁ ସେ ସହି ଯାଇଛନ୍ତି । ଯେଉଁଦିନ ଚମ୍ପା ବାଘସିଂହ ବଂଶର ଘର ପୋଡ଼ି ଦେଇଥିଲା, ସେହିଦିନ ଠାରୁ ସେ ରୋଗରେ ପଡ଼ିଥିଲେ ଓ ଶାରିଆର ମର୍ମନ୍ତୁଦ ଅବସ୍ଥାରେ ତାଙ୍କର ମୃତ୍ୟୁ ହୋଇଥିଲା । ସତେ ଯେପରି ସେ ଥିଲେ ମୂର୍ତ୍ତିମନ୍ତ ସହିଷ୍ଣୁତା । ଚନ୍ଦ୍ରକଳା ମାମୁଁ ଉପନ୍ୟାସର କଥାବସ୍ତୁକୁ ଗତିଶୀଳ କରିବାରେ ଅଧିକ ସାହାଯ୍ୟ କରିଅଛି । ଚନ୍ଦ୍ରକଳା ଅତି ନିଷ୍ଠୁରା, ଚତୁରା ଓ ବୁଦ୍ଧିମତୀ, ତଥାପି ବିଶାଖା ଦେଈଙ୍କ ଦ୍ୱାରା ନିର୍ଯ୍ୟାତିତ ନରୁବାବୁଙ୍କ ପ୍ରତି ସମବେଦନା ପ୍ରକାଶ କରିବା ତା ଚରିତ୍ରରେ ଏକ ବ୍ୟତିକ୍ରମ । ଚନ୍ଦ୍ରକଳା ନଟବର ଦାସଙ୍କ ପରିବାରରେ ଏକ ବିଶିଷ୍ଟ ସ୍ଥାନ ଗ୍ରହଣ କରିଥିଲା, ଯେପରି କି ମଙ୍ଗରାଜଙ୍କ ପରିବାରରେ ଚମ୍ପା ନିଜର ବୈଶିଷ୍ଟ୍ୟ ଓ ପ୍ରାଧାନ୍ୟ ବିସ୍ତାର କରିଥିଲା । ଚମ୍ପାର ବୁଦ୍ଧିମତ୍ତା ଓ ଅନିଷ୍ଟକାରିଣୀ ଶକ୍ତି ଯୋଗୁ ବାଘସିଂହ ବଂଶର ଓ ଭଗିଆର ସଂସାରରେ ଧ୍ୱଂସର ଲୀଳା ଦେଖାଦେଇଛି । ଚମ୍ପା ଏପରି ଏକ ନାରୀ ଯେ, ସେ ତାର ଆଶ୍ରୟଦାତାଙ୍କୁ ବିଶ୍ୱାସରେ ବିଷ ଦେବାକୁ ପଛେଇ ନାହିଁ । ମାମୁଁ ଉପନ୍ୟାସରେ ରେବେଇ ଚରିତ୍ର ସେହିପରି ଦେଖିବାର କଥା । ରେବେଇ ସତ୍ୟବାଦିନୀ, ନିର୍ଭୀକା, ଆତ୍ମନିର୍ଭରଶୀଳା ଓ ପରୋପକାରିଣୀ । ନିଜର ରୂପକୁ ଚନ୍ଦ୍ରକଳା ପରି ସେ ଜୀବିକାରୂପେ ବ୍ୟବହାର କରି ନାହିଁ । ତା ମୁହଁରେ ଏତେ ତଗ ଥାଏ ଯେ, ଯେ କୌଣସି କଥାର ସଂଶୋଧନ ସେ ତଗ ସାହାଯ୍ୟରେ କରୁଥିଲା । ପ୍ରାୟଶ୍ଚିତ ଉପନ୍ୟାସର ମଉଆ ଚରିତ୍ର ତ୍ୟାଗର ଏକ ବିଶିଷ୍ଟ ଉଦାହରଣ । ନିଜର ସୁଖ ଦୁଃଖକୁ ଦୃଷ୍ଟି ନ ଦେଇ ଇନ୍ଦୁପ୍ରଭାକୁ ସୁଖୀ କରିବାପାଇଁ ସେ ସର୍ବଦା ବ୍ୟଗ୍ର ।

ଇନ୍ଦୁପ୍ରଭାଙ୍କ ମୃତ୍ୟୁପରେ ସେ ନିଜକୁ ଦୋଷୀ ମନେକରି ତାଙ୍କର ମୃତ୍ୟୁପରଠାରୁ ସନ୍ୟାସିନୀ ଜୀବନ ଯାପନ କରିଥିଲା । ଛମାଣ ଆଠଗୁଣ୍ଠର ଶାରିଆ ଚରିତ୍ର ପ୍ରତି ଦୃଷ୍ଟି ଦେଲେ ଜଣାଯାଏ, ସେ ଥିଲା ସରଳା, ନିଷ୍ପାପହୃଦୟା । ତା ସରଳ ବିଶ୍ୱାସର ସୁଯୋଗ ନେଇଛି ଚମ୍ପା । ସନ୍ତାନବତୀ ହେବା ଆଶାରେ ଓ ପତିର ଅନିଷ୍ଟ ହେବା ଭୟରେ ସେ ହୋଇଛି ଚମ୍ପାର ଶିକାର । ଏହି ସରଳ ବିଶ୍ୱାସ ହିଁ ତା ଜୀବନରେ ଦୁଃଖ ଦୁର୍ବିପାକର କାରଣ । ନିଜର ଦରିଦ୍ର ପରିବାରରେ ନିଜର ସ୍ୱାମୀ ଓ ଗାଈଟିକୁ ନେଇ ଯେଉଁ ସୁଖର ଜୀବନ ସେ ଯାପନ କରୁଥିଲା, ସେ ଜୀବନରେ ଏକ ପ୍ରଳୟଙ୍କରୀ ଝଡ଼ ରୂପେ ଆବିର୍ଭୂତ ହୋଇଥିଲା ଚମ୍ପା । ଅନାହାରରେ ପ୍ରାଣ ଦେଇଛି ଶାରିଆ । ସ୍ୱାର୍ଥପର ମଙ୍ଗରାଜ ତା ହୃଦୟର ଭାଷାକୁ ବୁଝିବାରେ ଅସମର୍ଥ ।

ଏହିପରି ଭାବରେ ଦେଖିଲେ ଫକୀରମୋହନଙ୍କ ସୃଷ୍ଟିରେ ଚରିତ୍ରଚିତ୍ରଣର ବଳିଷ୍ଠତା ସମସ୍ତେ ଅନୁଭବ କରି ପାରିବେ । ଯେଉଁ ଫକୀରମୋହନ ରାମଚନ୍ଦ୍ର ମଙ୍ଗରାଜ ପରି ଶଠ, ଧୂର୍ତ୍ତ, ପ୍ରବଞ୍ଚକକୁ ଚିହ୍ନି ପାରିଥିଲେ, ତାହାଙ୍କର ଲେଖନୀ ଅନ୍ୟମାନଙ୍କୁ ଚିହ୍ନିବାରେ କେବେହେଲେ ଭୁଲ କରି ନ ପାରେ ।

## ( ୮ ) ଫକୀରମୋହନଙ୍କ ବର୍ଣ୍ଣନା ବିଳାସ :

ଫକୀରମୋହନଙ୍କ ସାହିତ୍ୟରେ ଯେଉଁପ୍ରକାର ବର୍ଣ୍ଣନା-ବିଳାସ ଦେଖାଯାଏ, ତାହା ତାଙ୍କ ନିଜସ୍ୱ । ତାଙ୍କର ଉପନ୍ୟାସ ଗୁଡ଼ିକର ଭାଷା ଓ ଭାବ ପାଠକର ହୃଦୟଗ୍ରାହୀ । ଛମାଣ ଆଠଗୁଣ୍ଠ ଉପନ୍ୟାସ ଆରମ୍ଭରୁ ଶେଷପର୍ଯ୍ୟନ୍ତ ଏପରି ଭାବରେ ବର୍ଣ୍ଣିତ ଯେ, ପ୍ରତ୍ୟେକ

ସ୍ଥଳରେ ହାସ୍ୟରସର ଅବକାଶ ମିଳଲେହେଁ କଥାବସ୍ତୁଗତ ବଳିଷ୍ଠତା ପାଠକଙ୍କୁ ହସିବାର ଅବକାଶ ନ ଦେଇ ପାଠକ୍ର ହୃଦୟରେ ନିର୍ଯ୍ୟାତିତ ପ୍ରତି ସମବେଦନା ଜାଗ୍ରତ କରାଏ । ଯେଉଁ ସ୍ଥାନରେ ତାଙ୍କର କିଛି କହିବାର ଥାଏ, ସେ ସ୍ଥାନରେ ସେ କିଛି ନ କହିଲି ପରି ଛଳନା କରନ୍ତି । ଅନ୍ତଃପୁରର ମହିଳାମାନଙ୍କ ବିଷୟ କହିବାକୁ ଯାଇ ସେ କହନ୍ତି ଯେ, ଅନ୍ତପୁରର ମହିଳାମାନଙ୍କ ବିଷୟରେ କହିବା ଶାସ୍ତ୍ର-ସମ୍ମତ ନୁହେଁ । ତେଣୁ ସେ ବିଶେଷ କିଛି କହିବେ ନାହିଁ, ମାତ୍ର ପ୍ରକୃତରେ ସେ ବିଷୟ ସେ ଏତେ କହନ୍ତି ଯେ, କୌଣସି ଠିକିଏ ବାକି ରହେ ନାହିଁ । ଚମ୍ପାର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ସତେ ଯେପରି ଅତି ନମ୍ର ଭାବରେ ସେ ଜଣେ ପରମ ରୂପବତୀ ଯୁବତୀଙ୍କର ରୂପ ବର୍ଣ୍ଣନା କରୁଛନ୍ତି, ମାତ୍ର ଏହି ବର୍ଣ୍ଣନା ଭିତରେ ବ୍ୟଙ୍ଗ ବିଦ୍ରୂପର ମାତ୍ରା ଏତେ ବେଶୀ ଯେ ପାଠକ ଏହି ବର୍ଣ୍ଣନାରୁ ଚମ୍ପାର ସମ୍ୟକ୍ ପରିଚୟ ପାଇଯାଏ । ବାଘସିଂହ ବଂଶର ଘରପୋଡ଼ିବାକୁ ଚମ୍ପା ଯେତେବେଳେ ଠାଙ୍ଗୀ ମାଉସୀରୂପରେ ଯାଇଛି, ସେତେବେଳକାର ବର୍ଣ୍ଣନା ଏତେ ଜୀବନ୍ତ ହୋଇଛି ଯେ ଚମ୍ପା ଏପରି ଏକ ଦୁରଭିସନ୍ଧି ରଖି ହୀନକର୍ମ ସକାଶେ ପ୍ରେରିତ ବୋଲି କେହି ଜାଣି ପାରିବେ ନାହିଁ । ଲଛମା ଉପନ୍ୟାସର ସୋସୋ ଗ୍ରାମର ବର୍ଣ୍ଣନା ଅତୀବ ହୃଦୟଗ୍ରାହୀ ହୋଇଅଛି । ଏହି ଗ୍ରାମର ବର୍ଣ୍ଣନା ପାଠକଲେ ପାଠକ ସମ୍ମୁଖରେ ଉତ୍କଳର ରମଣୀୟ ପ୍ରକୃତି ପ୍ରତିଭାତ ହୁଏ । ଲଛମା ଉପନ୍ୟାସରେ କଥାବସ୍ତୁର ଅଗ୍ରଗତି ସହିତ ବର୍ଣ୍ଣନା ବିଳାସର ବଳିଷ୍ଠତା ଯୋଗୁଁ ଉପନ୍ୟାସର ମର୍ଯ୍ୟାଦା ରକ୍ଷିତ ହୋଇ ପାରିଛି । ମାମୁଁ ଉପନ୍ୟାସରେ ଯୁଗଳକିଶୋର ମନ୍ଦିରରେ ହରିଲୁଟ୍ ବର୍ଣ୍ଣନା, ଚିତ୍ରକଳା ଓ ବିଶାଖା ଦେଈଙ୍କର କଳ ସମୟର ବର୍ଣ୍ଣନା ଓ ପଣ୍ଡିତ-ସଭାର ବର୍ଣ୍ଣନା ଯେ କୌଣସି ପାଠକଙ୍କୁ ମୁଗ୍ଧ କରିବ, ଏଥିରେ ସନ୍ଦେହ ନାହିଁ ।

ଫକୀରମୋହନଙ୍କ କ୍ଷୁଦ୍ର-ଗଳ୍ପରେ ମଧ୍ୟ ବର୍ଣ୍ଣନା-ବିଳାସର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ । କ୍ଷୁଦ୍ର ଗଳ୍ପରେ ବର୍ଣ୍ଣନା ବିଳାସର ପ୍ରାଚୁର୍ଯ୍ୟ ଦୋଷାବହ ହେଲେହେଁ ତାଙ୍କୁ ସେ ଏଡ଼ି ପାରି ନାହାନ୍ତି । ରଣ୍ଡିପୁଅ ଅନନ୍ତା ଗଳ୍ପରେ ଫକୀରମୋହନ ବର୍ଣ୍ଣନା-ବିଳାସରେ ଭାସିଯାଇ ଗଳ୍ପର ମର୍ଯ୍ୟାଦାକୁ କ୍ଷୁଣ୍ଣ କରିଛନ୍ତି । ଅଧର୍ମବିତ୍ତ ଓ ସଭ୍ୟ ଜମିଦାର ଗଳ୍ପରେ ସେହିପରି ବର୍ଣ୍ଣନା ବାହୁଲ୍ୟ ଦେଖା ଦେଇଛି ।

ଫକୀରମୋହନଙ୍କ ଆତ୍ମଚରିତରେ ତାଙ୍କ ଜୀବନ କାଳରେ ଘଟିଥିବା ଘଟଣାଗୁଡ଼ିକ ଏପରି ଭାବରେ ବର୍ଣ୍ଣିତ ହୋଇଛି ଯେ, ପାଠକ ମନେକରିବେ, ଏହା ଯେପରି ଏକ କାଳ୍ପନିକ ଉପନ୍ୟାସ । ସତ୍ୟ ଘଟଣାକୁ ବର୍ଣ୍ଣନା କରିବାର କୌଶଳ ସେ ଏପରି ପ୍ରଦର୍ଶନ କରିଛନ୍ତି ଯେ, ଅନେକ ସମୟରେ ପାଠକ ମନେକରେ ଏହା କଣ ଫକୀରମୋହନଙ୍କ ନିଜ ଜୀବନକଥା ନା ଉପନ୍ୟାସର କାଳ୍ପନିକ କଥାବସ୍ତୁ ।

ଗଦ୍ୟ ବିଭାଗକୁ ଛାଡ଼ିଦେଲେ ସେନାପତିଙ୍କର ପଦ୍ୟ ବିଭାଗର ଶୈଳୀ ବିଚାର କରିବାର କଥା । ମୁଁ ହାଟବାହୁଡ଼ା କବିତାରେ ତାଙ୍କର ସମସାମୟିକ ଯୁଗରୁଚି ପ୍ରତି ମନୋଭାବ ସ୍ପଷ୍ଟ ଭାବରେ ପ୍ରକାଶ ପାଇଛି । ଏହି ପ୍ରକାଶରେ ସ୍ୱାତନ୍ତ୍ର୍ୟ ଅଛି । ସମସାମୟିକ ଯୁଗ ରୁଚିକୁ ଲକ୍ଷ୍ୟ କରି ରାଧାନାଥ ଏବଂ ଗଙ୍ଗାଧର ବ୍ୟଙ୍ଗାତ୍ମକ କବିତା ଲେଖିଥିଲେହେଁ ସେନାପତିଙ୍କର ଉକ୍ତ କବିତା ଏକ ନିର୍ଦ୍ଦିଷ୍ଟ ଦୃଷ୍ଟି-କୋଣର ପରିଚୟ ଦିଏ । ଉତ୍କଳ ଭ୍ରମଣଂରେ ଫକୀରମୋହନ ଏ ଦେଶର ଗୁଣୀ ସନ୍ତାନମାନଙ୍କର ନିର୍ଭୀକ ସମାଲୋଚନା କରିଅଛନ୍ତି । ଉତ୍କଳ ଭ୍ରମଣଂରେ ସେ ଯେଉଁ ଉତ୍କୃଷ୍ଟ

ଦୃଷ୍ଟିକୋଣର ପରିଚୟ ଦେଇଥିଲେ, ତାହା ତାଙ୍କ ପରବର୍ତ୍ତୀ ରଚନାମାନଙ୍କରେ ବିକଶିତ ହୋଇଅଛି । ଫକୀରମୋହନଙ୍କର ଅବସର ବାସରେ ଓ ବୌଦ୍ଧାବତାର କାବ୍ୟ ପ୍ରଭୃତି କବିତା-ଗୁଡ଼ିକରେ ତାଙ୍କ ସ୍ୱତନ୍ତ୍ର ଶୈଳୀର ପରିଚୟ ମିଳେ । ଗଦ୍ୟ ଏବଂ ପଦ୍ୟ ଉଭୟ ବିଭାଗରେ ସେନାପତି ଶୈଳୀର କୃତିତ୍ୱବଦ୍ୟତା ଏବେ ମଧ୍ୟ ଅବଧାରଣୀୟ । ତାଙ୍କର ଉପନ୍ୟାସର ଶୈଳୀ ଆଜ ପର୍ଯ୍ୟନ୍ତ ଓଡ଼ିଆ ଉପନ୍ୟାସ ରାଜ୍ୟରେ ଅନତିକ୍ରମ୍ୟ । ତାଙ୍କର ଶୈଳୀରେ ମୁଗ୍‌ଧ ହୋଇ ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କୁ ଅନୁସରଣ କରିଥିଲେ । ଗୋପାଳଚନ୍ଦ୍ରଙ୍କର ଶୈଳୀ ଫକୀରମୋହନଙ୍କୁ ଅନୁସରଣ କରିଛି ସତ, କିନ୍ତୁ ତାଙ୍କ ଶୈଳୀର ସମକକ୍ଷ ହୋଇ ପାରିନାହିଁ । ଏହି ଦୃଷ୍ଟିରୁ ଫକୀରମୋହନ ଅଜେୟ ।

## (୯) ଫକୀରମୋହନଙ୍କ ସାହିତ୍ୟରେ ସମାଜ-ସଂସ୍କାର ।

ଏ ଦେଶରେ ଇଂରେଜ ଶାସନ ପ୍ରଚଳିତ ହେବାର ୪୦ ବର୍ଷ ପରେ ଫକୀରମୋହନ ସେନାପତିଙ୍କର ଜନ୍ମ । ଇଂରେଜ ଶାସନ ପୂର୍ବରୁ ମରହଟ୍ଟା ଶାସନ ସମୟରେ ଦେଶର ଗଣଜୀବନରେ ନିରାପତ୍ତାର କୌଣସି ସୂଚନା ନ ଥିଲା । ବର୍ଗୀ ଅତ୍ୟାଚାରରେ ସାଧାରଣ ଧନ ଜୀବନ ସବୁବେଳେ ବିପନ୍ନ ଅବସ୍ଥାରେ ଥିଲା । ୧୮୦୩ ସାଲରେ ଇଂରେଜମାନେ ଏ ଦେଶକୁ ଦଖଲ କରିବା ପରେ ଦେଶରେ ରାଜନୈତିକ ସ୍ଥିରତା ଦେଖା ଦିବା ସଙ୍ଗେ ସଙ୍ଗେ ସାଧାରଣ ଧନ ଜୀବନର ନିରାପତ୍ତା ପ୍ରତି ଶାସକ ଗୋଷ୍ଠୀର ଦୃଷ୍ଟି ରହିଲା । ଦୀର୍ଘକାଳ ଧରି ଅତ୍ୟାଚାରିତ, ଲାଞ୍ଛିତ ଗଣଜୀବନରେ ସ୍ଥିରତା ଲକ୍ଷିତ ହେଲା ।

ଇଂରେଜମାନେ ଏ ଦେଶକୁ ଶାସନ କରିବା ସଙ୍ଗେ ସଙ୍ଗେ ଦେଶର ଶିକ୍ଷା ଓ ସଂସ୍କୃତି ଉପରେ ପ୍ରଭାବ ପକାଇବାକୁ ସମର୍ଥ ହୋଇଥିଲେ । ତେଣୁ ବିଦେଶୀ ସରକାର ତଥା ବିଦେଶୀ ସଭ୍ୟତା ସଂସ୍ପର୍ଶରେ ଆସି ଏ ଦେଶର ଜନସାଧାରଣ ସଭ୍ୟ ଓ ଶିକ୍ଷିତ ହେବା ସଙ୍ଗେ ସଙ୍ଗେ ବିଦେଶୀ ପ୍ରାଧାନ୍ୟକୁ ସ୍ୱୀକାର କଲେ । ଇଂରେଜୀ ଶିକ୍ଷା ଓ ଭାଷାର ଅଧ୍ୟୟନ ସଙ୍ଗେ ସଙ୍ଗେ ରୁଚିର ପରିବର୍ତ୍ତନ ଏପରି ଭାବରେ ଦେଖାଦେଲା ଯେ, ଭାରତୀୟମାନେ ନିଜର ସ୍ୱାତନ୍ତ୍ର୍ୟ ଭୁଲି ବିଦେଶୀ ଚାକଚକ୍ୟର ଅନୁକରଣ କଲେ । ତେଣୁ ଭାରତୀୟ ଜନ-ଜୀବନରେ ଧାର୍ମିକ, ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ସ୍ତରରେ ଏକ ଚରମ ପରିବର୍ତ୍ତନର ସୂତ୍ରପାତ ହେଲା । ଭାରତୀୟ ନିଜ ଜାତୀୟତାକୁ ଭୁଲିଯାଇ କେବଳ ସାହେବୀ ଆଭିଜାତ୍ୟରେ ନିଜକୁ ଭୂଷିତ କରିବାକୁ ଲାଗିଲା । କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତୀୟ ଜୀବନରେ ଏହିପରି ଏକ ଘଡ଼ି-ସନ୍ଧିରେ ୧୮୪୩ ସାଲରେ ଫକୀରମୋହନଙ୍କର ଜନ୍ମ । ବାଲ୍ୟାବସ୍ଥାରୁ ଫକୀରମୋହନ ଦେଖିବାକୁ ପାଇଥିଲେ, ଆମ ସମାଜରେ 'ଦେଶୀ' ଓ 'ବିଦେଶୀ'ର କାରବାର । ତେଣୁ ତାଙ୍କର ପରବର୍ତ୍ତୀ ଜୀବନରେ ଯେତେବେଳେ ସେ ସାହିତ୍ୟ-ସାଧନାରେ ଲିପ୍ତ ଥିଲେ, ସେତେବେଳେ ଦେଶର ଏହି ଦୁର୍ବିପାକ ଲାଗି ସେ ଅନେକବାର କ୍ଷୋଭ ପ୍ରକାଶ କରିଛନ୍ତି । ତାଙ୍କ ଜୀବନରେ ନ'ଅଙ୍କ ଦୁର୍ଭିକ୍ଷ ଓ ଓଡ଼ିଶାର ଭାଷା ଆନ୍ଦୋଳନ ଦୁଇଟି ସ୍ମରଣୀୟ ଘଟଣା । ଏହି ଦୁଇଟି ଘଟଣା ଲାଗି ଫକୀରମୋହନ ଯାହା କହିଛନ୍ତି ବା କରିଛନ୍ତି, ସେଥିରୁ ତାଙ୍କର ଜାତୀୟତାର ପ୍ରମାଣ ଯଥେଷ୍ଟ ଭାବରେ ମିଳେ । କେବଳ ବାଲେଶ୍ୱର ନୁହେଁ, ଓଡ଼ିଶାର ବିଭିନ୍ନ ସ୍ଥାନରେ ଜୀବିକାନିର୍ବାହ ଉଦ୍ଦେଶ୍ୟରେ ଯେତେବେଳେ ସେ କାଳାତିପାତ

କରିଛନ୍ତି, ସେତେବେଳେ ବିଭିନ୍ନ ପ୍ରକାର ସାମାଜିକ କ୍ରିୟାକଳାପ ସଂପର୍କରେ ସେ ଆସିଛନ୍ତି । ତେଣୁ ତାଙ୍କ ରଚନାରେ ସମାଜରେ ବିଭିନ୍ନ ପ୍ରକାର କ୍ରିୟାକଳାପର ବର୍ଣ୍ଣନା ଅଛି ।

ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷା କି ପ୍ରକାର ବିଷମୟ ପରିସ୍ଥିତିର ସୂତ୍ରପାତ କରିଥିଲା, ସେ ବିଷୟରେ ଫକୀରମୋହନ 'ମୁଁ ହାଟ ବାହୁଡ଼ା' କବିତାରେ ଲେଖିଛନ୍ତି । ବିଦେଶୀ ଦ୍ରବ୍ୟର ଆଦର ସମାଜରେ ଯଥେଷ୍ଟ ବେଶୀ । ଦେଶୀ ଜିନିଷର ଆଦର ଆଉ ନାହିଁ । ଯେଉଁ ଅବଧାନ ଦେଶୀୟ ରୀତିରେ ଶିକ୍ଷାଦାନ କରେ ସେ ଏ ଯୁଗରେ ଖାଇବାକୁ ନପାଇ ମରିବା ସାର ହୁଏ । ମାତ୍ର ଯେ କୋଟ ପ୍ୟାଣ୍ଟ ପିନ୍ଧି ସେକ୍ସପିଅର, ବାଇରେନ୍‌ଙ୍କ କଥା ପଢ଼ାଏ; ତାର କଳେବର ପୃଥୁଳାକାର ଧାରଣ କରେ । ଦେଶର ପ୍ରତ୍ୟେକ ସ୍ଥାନରେ ଏପରି ଅବସ୍ଥା ଲକ୍ଷ୍ୟ କରି ସେ ମର୍ମାହତ ହୋଇଛନ୍ତି ଏବଂ ଲେଖିଛନ୍ତି:—

"ପିଲାଏ ଖାଆନ୍ତି ଏ ସବୁ ଫଳ । ବାପ ଟଙ୍କା ଗଣି ଦିଏ କେବଳ ॥
ଏ ସବୁ ଫଳର ଗୁଣ ଓଲଟା । ହୁଏ ଦେହ ସରୁ ବୁଦ୍ଧି ଟା ମୋଟା ॥
ମାତ୍ରକ ହଜମ ଯେ କରିଜାଣେ । ଜଗତ ଜିଣେ ସେ ଆପଣା ଗୁଣେ ॥
ଅଳପ ଖାଇଲେ ଘଟେ ଜଞ୍ଜାଳ । ବହୁତ ଖାଇଲେ ଫିଟେ କପାଳ ॥

ଫକୀରମୋହନଙ୍କ ଉପନ୍ୟାସରେ ତାଙ୍କର ସଂସ୍କାର-ଲିପସା ଛନ୍ଦେ ଛନ୍ଦେ ଦେଖା ଦେଇଛି । ସମାଜରେ ଜାତିଆଣ ପ୍ରଥାର ଯେଉଁ ଅଯଥା ଦୃଢ଼ତା ଦେଖାଯାଏ, ସେ ବିଷୟରେ ସେ ଆଲୋକପାତ କରିଛନ୍ତି । ଜଣେ ଲୋକ କିଛି ଭୁଲ କଲେ ତାକୁ ଜାତିରୁ ଅଟକ କରିବା ଓ ସେ ଅଯଥା ଖର୍ଚ୍ଚାନ୍ତ ହୋଇ ପ୍ରାୟଶ୍ଚିତ୍ତ

କରିବା ପରେ ପୁଣି ଜାତିରେ ମିଶାଇବା ନୀତି ଆମ ସମାଜ ପକ୍ଷରେ ନିତାନ୍ତ କ୍ଷତିକାରକ । ରାମଚନ୍ଦ୍ର ମଙ୍ଗରାଜ ଶ୍ୟାମ ମଲ୍ଲିଙ୍କୁ ପିଆଜ ଓ କୋବି ଖାଇଥିବା ଯୋଗୁଁ ଜାତିରୁ ବାସନ୍ଦ କରିଥିଲେ । ଶ୍ୟାମ ମଲ୍ଲିଙ୍କଠାରୁ ୧୫ମାଣ ଜମି ନେଇ ପୁଣି ତାଙ୍କୁ ଜାତିରେ ମିଶାଇଲେ । ଏଥିରୁ ରାମଚନ୍ଦ୍ର ମଙ୍ଗରାଜଙ୍କ ଚରିତ୍ରରେ ପର ଧନ ପାଇଁ ଲୋଲୁପ ଦୃଷ୍ଟିର ଆଭାସ ଯେତିକି ମିଳୁଛି, ସମାଜର ଅଯଥା ରକ୍ଷଣଶୀଳ ପ୍ରଥାର ପରିଚୟ ସେତିକି ମିଳୁଛି ।

ନିଜର ଜାତିତ୍ୱକୁ ବଜାୟ ରଖିବା ନିମିତ୍ତ ଏ ଦେଶରେ ଲୋକମାନେ ଯେଉଁ ଅଯଥା ଅହମିକା ଦେଖାନ୍ତି, ଫକୀରମୋହନ ସେମାନଙ୍କ ପ୍ରତି ବ୍ୟଙ୍ଗବାଣ ପ୍ରୟୋଗ କରିଛନ୍ତି । କରଣମାନଙ୍କର ସମାଜରେ ପ୍ରାଧାନ୍ୟ ଦେଖାଯାଇଥାଏ । ଏ ପ୍ରାଧାନ୍ୟର କାରଣ ସେମାନେ"ତେଉଗଣି"ରୋଜଗାର କରିବାରେ ସମର୍ଥ । ଖଣ୍ଡାୟତମାନେ ନିଜକୁ ଯୁଦ୍ଧବିଦ୍ୟା ନିପୁଣ ଏକ ଶକ୍ତିଶାଳୀ ଜାତିରୂପେ ଭାବିଲେ ହେଁ ସେମାନଙ୍କର ଏହି ଅହମିକାର ଭାବନା ସେମାନଙ୍କୁ ପତନ ମୁଖରେ ପକାଇଛି । ସାଧାରଣ କଥାରେ, ସାଧାରଣ କଳିରେ ସେମାନେ ଠେଙ୍ଗାବାଡ଼ି ଉଠାଇ ନିଜ ଶକ୍ତିର ଅପଚୟ କରିବା ଫଳରେ ସେମାନଙ୍କଠାରୁ ସେ ଶକ୍ତି ଆଜି ଦୂରରେ । ଗଉଡ଼ମାନେ ନିଜ ଜାଙ୍ଗିଆସୂତାକୁ ନେଇ ଯେତେ ଗର୍ବ କଲେ ହେଁ ଦୁଧରେ ଟୋପାଏହେଲେ ପାଣି ମିଶାଇବା ସେମାନଙ୍କର ପୁରୁଷଗତ ବ୍ୟବସାୟ । ବ୍ରାହ୍ମଣମାନଙ୍କର ଅଧଃପତନରେ ଫକୀରମୋହନ ସେହିପରି ଦୁଃଖିତ ହୋଇଛନ୍ତି । ଧର୍ମ, ଜ୍ଞାନ ଏବଂ ଶାସ୍ତ୍ରରେ ପାରଦର୍ଶିତା ଲାଭ କରିଥିବା, ଜାତି ବର୍ଣ୍ଣାଶ୍ରମରେ ଉଚ୍ଚତମ ସ୍ଥାନ ଅଧିକାର କରିଥିବା ବ୍ରାହ୍ମଣମାନେ ଆଜିକାଲି ନିଜର କୁଳ-

ବ୍ୟବସାୟ୍ ଭୂଲି କେବଳ ପରସ୍ୱାପହରଣକାରୀ ରୂପେ ଜୀବନ ନିର୍ବାହ କରୁଛନ୍ତି । ଯଜମାନ ଘର ଗୃହଉଲ ଏବଂ ମୃତାହଜିସ୍କାର ଭୋଜନ ସେମାନଙ୍କର ଅବଲମ୍ୱନର ପ୍ରଧାନ କାରଣ ହୋଇଅଛି । ବଲ ବାଛିବା, ବଲରୁ ମାଛ ମାରିବାରେ ସେମାନେ ଯେତେ ଧୂରନ୍ଧର କର୍ମକାଣ୍ଡ ପ୍ରତି ଆଦୌ ନୁହଁନ୍ତି । ଫକୀରମୋହନ ବିଦ୍ରୂପ ପ୍ରୟୋଗ କରି ବ୍ରାହ୍ମଣମାନଙ୍କୁ ସମାଲୋଚନା କରିଥିଲେ ହେଁ ବ୍ରାହ୍ମଣମାନଙ୍କର ଅଧଃପତନରେ ଦୁଃଖ ପ୍ରକାଶ କରି ବ୍ରାହ୍ମଣ ସମାଜର ସଂସ୍କାର ଇଚ୍ଛା କରିଛନ୍ତି ।

ଅର୍ଥଲୋଭୀ ପିଶାଚମାନଙ୍କର ସମାଜରେ ପ୍ରତିପତ୍ତି ଓ କ୍ରିୟାକଳାପରେ ଫକୀରମୋହନ ସଂସ୍କାର ଆଣିବା ନିମିତ୍ତ ଚେଷ୍ଟା କରିଛନ୍ତି । ରାମଚନ୍ଦ୍ର ମଙ୍ଗରାଜ ଓ ନାଜର ନଟବର ଦାସ ଏହାର ଜ୍ୱଳନ୍ତ ପ୍ରମାଣ । ରାମଚନ୍ଦ୍ର ମଙ୍ଗରାଜ ପରଧନ ଅପହରଣ କରିବାରେ ଯେଉଁ ପନ୍ଥା ଗ୍ରହଣ କରିଛନ୍ତି, ସେ ପନ୍ଥା ନଟବର ଦାସଙ୍କ ପନ୍ଥାଠାରୁ ଭିନ୍ନ । ଏହାର କାରଣ ରାମଚନ୍ଦ୍ର ମଙ୍ଗରାଜଙ୍କର ସମୟ ଓ ନଟବର ଦାସଙ୍କର ସମୟ ଭିନ୍ନ ।

ନାରୀମାନଙ୍କର ସମାଜରେ ଅବସ୍ଥାଭିନ୍ନତା ଦୃଷ୍ଟିରୁ କ୍ରିୟା-କଳାପ ଦେଖି ଫକୀରମୋହନ ଅନେକ ସମୟରେ କ୍ଷୁବ୍ଧ ହୋଇଛନ୍ତି । ଛମାଣ ଆଠଗୁଣ୍ଠ, ମାମୁଁ, ଲଛମା, ପ୍ରାୟଶ୍ଚିତ୍ତ ଓ ଫକୀରମୋହନଙ୍କ ଅନେକ ଗଳ୍ପରେ ଏହା ଅନେକଥର ପ୍ରକାଶିତ । ଛମାଣ ଆଠଗୁଣ୍ଠରେ ଚମ୍ପା, ମରୁଆ, ଶଶିକଳା ଏମାନଙ୍କ ଚରିତ୍ର ଅତି ଦୂଷଣୀୟ ଭାବରେ ଚିତ୍ରିତ । ଅବସ୍ଥା ଚକ୍ରରେ ପଡ଼ିଲେ ନାରୀମାନେ ଯେ କେତେ ଭୟଙ୍କର ହୋଇପାରନ୍ତି, ତାହା ଫକୀରମୋହନ ଦେଖାଇଛନ୍ତି । ମରୁଆ ଚରିତ୍ରଟିକୁ ଏଠାରେ

ଧର୍ମ ନିଆଯାଉ । ବାଲ୍ୟବୈଧବ୍ୟ ପରେ ଲଳିତା ଦାସ ବାବାଜୀଙ୍କ ସଙ୍ଗରେ ପଳାଇଆସି ସେ ତେଲେଙ୍ଗା ବଜାରରେ ଥିଲି । ମଙ୍ଗରାଜେ ମୋକଦ୍ଦମା କାର୍ଯ୍ୟରେ କଟକ ଆସି ତେଲେଙ୍ଗା ବଜାରରୁ ତାକୁ ନେଇ ତାଙ୍କ ଘରେ ସ୍ଥାନ ଦେଇଥିଲେ । ଏଥିରୁ ଜଣାଯାଏ ସମାଜରେ ବିଧବାମାନଙ୍କ ପତିତା ହେବାପାଇଁ ପରୋକ୍ଷରେ ସୁଯୋଗ ଦିଆଯାଇଛି । ଲଳିତା ଦାସ ବାବାଜୀଙ୍କ ସଙ୍ଗେ ଆସି ମରୁଆ ରହିଛି ତେଲେଙ୍ଗା ବଜାରରେ । କଟକରେ ତେଲେଙ୍ଗା ବଜାରରେ ଏପରି ଅବସ୍ଥାରେ ରହିବାର ଯାର୍ଥାଥ୍ୟ ଯଥେଷ୍ଟ ଅଛି । ସେତେବେଳେ ତେଲେଙ୍ଗାବଜାର ରୂପଜୀବାମାନଙ୍କର କେନ୍ଦ୍ରଥିଲି । ଏହି ରୂପଜୀବା କେନ୍ଦ୍ରକୁ ମଙ୍ଗରାଜଙ୍କର ଯିବା ଆସିବା କରିବା ଏଠାରେ ମଙ୍ଗରାଜ-ଚରିତ୍ରର ଏକ ଦିଗ ପ୍ରଦର୍ଶନ କରିଅଛି । ଭଣ୍ଡ ସନ୍ନ୍ୟାସୀମାନଙ୍କର ସମାଜରେ କୁକର୍ମ କରିବା କଥା ଏଥିରୁ ମଧ ପ୍ରକାଶ ପାଉଛି । ଧୂଳିଆବାବା ଗଳ୍ପରେ ଏହି ସତ୍ୟର ଉନ୍ମୋଚନ ହୋଇଅଛି । ଅଶିକ୍ଷିତ ଅନ୍ଧବିଶ୍ୱାସୀ ଜନସାଧାରଣ ଏମାନଙ୍କ ଉପରେ ଯେଉଁ ଆସ୍ଥା ସ୍ଥାପନ କରନ୍ତି, ତାହା କେବଳ ବିଶ୍ୱାସରେ ବିଷ ଦେବାର କାର୍ଯ୍ୟ କରେ । ରେବତୀ ଗଳ୍ପରେ ସ୍ତ୍ରୀ ଶିକ୍ଷା ପ୍ରତି ସମାଜର ଦୃଷ୍ଟି ସ୍ପଷ୍ଟତର ଭାବରେ ପ୍ରକାଶ ପାଇଛି । ଗାରୁଡ଼ି ମନ୍ତ୍ରରେ ନାରୀମାନଙ୍କର ଅଯଥା ଆଡ଼ ହେବା ରୀତିର ବିରୁଦ୍ଧାଚରଣ କରାଯାଇଛି । ଫକୀରମୋହନଙ୍କ ଉପନ୍ୟାସରେ ଗାଁ ପୋଖରୀ ତୁଠରେ ସ୍ତ୍ରୀଲୋକମାନଙ୍କର ପରଚର୍ଚ୍ଚା କରିବା ସମୟରେ ଲେଖକ ଅଯଥା ପରଚର୍ଚ୍ଚାରେ ସମୟ ନଷ୍ଟ କରିବା ବିରୁଦ୍ଧରେ ପରୋକ୍ଷ ଭାବରେ ମତ ଦେଇଛନ୍ତି । ମଦ୍ୟପାନ ଆମ ସମାଜରେ ଏକ କଳଙ୍କ ସଦୃଶ ଦେଖା ଦେଇଛି । ମଦ୍ୟପାନରୁ ସ୍ୱାମୀଙ୍କୁ ବିରତ କରିବା ନିମନ୍ତେ ସୁଲୋଚନା ଯେଉଁ ପେଟେଣ୍ଟ ମେଡିସିନ୍ ବ୍ୟବହାର

କରିଛନ୍ତି, ସେଥିରେ ପ୍ରୟୋଗ ପ୍ରଣାଳୀ କରୁଣ ହେଲେ ହେଁ ପରିଣତି ମଙ୍ଗଳକର ହୋଇଅଛି ।

ଶାସନ କ୍ଷେତ୍ରରେ ଫକୀରମୋହନଙ୍କ ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ଜୀବିକା ନିର୍ବାହ କରିବା ନିମିତ୍ତ ଓଡ଼ିଶାର ବିଭିନ୍ନ ଷ୍ଟେଟ୍‌ରେ ଦେଓ୍ୱାନୀ କରିବା ସମୟରେ ଶାସନକଳର ଦୋଷ ଦୁର୍ବଳତା ସେ ହୃଦୟଙ୍ଗମ କରିପାରିଥିଲେ । ସରକାରୀ ଶାସନ କ୍ଷେତ୍ରରେ ସରକାରୀ କର୍ମଚାରୀମାନଙ୍କର ଏକଛତ୍ରବାଦିତାକୁ ସେ ସମର୍ଥନ କରିନାହାନ୍ତି । ଛମାଣ ଆଠଗୁଣ୍ଠରେ ପୋଲିସ୍-ସମ୍ପୃକ୍ତ ବର୍ଣ୍ଣନାରେ ପୋଲିସ୍‌ମାନଙ୍କର କାର୍ଯ୍ୟକଳାପକୁ ଯେପରି ଭାବରେ ଲେଖକ ବର୍ଣ୍ଣନା କରିଛନ୍ତି, ସେଥିରୁ ଇଂରେଜ ରାଜତ୍ୱ ସମୟରେ ପୋଲିସ୍ ବିଭାଗର ଶକ୍ତିର ପରିଚୟ ମିଳିଲେ ହେଁ ଏଥିପ୍ରତି ଫକୀରମୋହନଙ୍କର ପ୍ରଚ୍ଛନ୍ନ ବିଦ୍ରୁପ ଥିବାର ପରିଲକ୍ଷିତ ହୁଏ । ତତ୍କାଳୀନ ନବ୍ୟଶିକ୍ଷିତ ଯୁବକ ଶ୍ରେଣୀର ମନୋବୃତ୍ତିକୁ ଫକୀରମୋହନ ଅତି ସୁନ୍ଦର ରୂପେ ଚିହ୍ନି ପାରିଥିଲେ । ପ୍ରାୟଶ୍ଚିତ୍ତ ଉପନ୍ୟାସରେ ସେ ଏହି ଶିକ୍ଷିତ ଶ୍ରେଣୀର ମନୋବୃତ୍ତି ପ୍ରକାଶ କରିଅଛନ୍ତି । ନୂଆ ଭାବରେ ଶିକ୍ଷା ପାଇ ପୁରୁଣାଦିନର ଅନ୍ଧପରମ୍ପରାରୁ ବିଶ୍ୱାସ ହରାଇ ନୂଆ ବାଟରେ ଜୀବନକୁ ପରିଚାଳିତ କରିବା ନିମିତ୍ତ ଏହି ଶିକ୍ଷିତ ଶ୍ରେଣୀର ମନୋବୃତ୍ତି ପ୍ରଶଂସାର୍ହ ହେଲେହେଁ ଏମାନଙ୍କର ଆଦର୍ଶର ବଳିଷ୍ଠତା ନ ଥିଲା । ବିବାହ ପ୍ରସଙ୍ଗରେ ପୁରାତନ ଜ୍ୟୋତିଷ ବିଦ୍ୟାକୁ ଅବଜ୍ଞାକରି ଦେଖିଗୁହ୍ନିଁ ବିବାହ କରିବାକୁ ଏହି ଯୁବକ ଶ୍ରେଣୀ ଉଚିତ ମନେ କରନ୍ତି । ଆଧୁନିକତା କେବଳ ବିବାହରେ ପର୍ଯ୍ୟବସିତ ହୋଇ ରହିଛି । ଜୀବନର ଅନ୍ୟାନ୍ୟ ପରିସରରେ ଆଧୁନିକତାର ଆବେଗ ନାହିଁ । ଜ୍ୟୋତିଷବିଦ୍ୟାର ଅସାରତା ଦେଖାଇବାକୁ ଯାଇ

 

ଫକୀରମୋହନ ଅଶିକ୍ଷିତ ଜ୍ୟୋତିଷୀମାନଙ୍କୁ ବିଦ୍ରୂପ କରିଅଛନ୍ତି । ଡାକମୁନସି ଗଳ୍ପରେ ଏହିପରି ଗୋଟିଏ ତଥାକଥିତ ଶିକ୍ଷିତ ଯୁବକର ମନୋବୃତ୍ତିର ଯଥାର୍ଥ ପରିଚୟ ମିଳିଅଛି ।

ଦେଶ ଓ ଜାତିର ଅଧଃପତନରେ ବ୍ୟଥିତ ଫକୀରମୋହନ ସମାଜର ପ୍ରତ୍ୟେକସ୍ତରର କ୍ରିୟାକଳାପକୁ ଲକ୍ଷ୍ୟକରି ସେ ସବୁର ସଂସ୍କାର ନିମନ୍ତେ ତାଙ୍କର ସୃଷ୍ଟି ସମ୍ପଦ ଭିତରେ ସୂଚନା ଦେଇଅଛନ୍ତି ।

## (୧୦) ବ୍ୟାସକବି ଫକୀରମୋହନଙ୍କ ଆତ୍ମଜୀବନ-ଚରିତ

ବ୍ୟାସକବି ଫକୀରମୋହନଙ୍କ ଆତ୍ମଜୀବନଚରିତ ଯେ କୌଣସି ପାଠକର ମନକୁ ଆକର୍ଷଣ କରେ । ଫକୀରମୋହନ ନିଜ ହାତରେ ନିଜର ଜୀବନ-ଚରିତ ଲେଖି ଉତ୍କଳସାହିତ୍ୟରେ ପ୍ରକାଶ କରୁଥିଲେ । ଫକୀରମୋହନଙ୍କ ଲେଖନୀରେ ଏପରି ଗୋଟିଏ ଯାଦୁକାରୀ ସ୍ପର୍ଶ ଥିଲା ଯେ, ସେ ଯାହା ଲେଖୁଥିଲେ ତାହା ସୁଖପାଠ୍ୟ ହେଉଥିଲା । ତେଣୁ ତାଙ୍କର ଆତ୍ମଜୀବନ-ଚରିତରେ ବର୍ଣ୍ଣିତ ଘଟଣାଗୁଡ଼ିକ ଏପରି ଭାବରେ ରୂପାୟିତ ହୋଇଛି ଯେ, ପାଠକ ଏହାକୁ ଏକ ଆତ୍ମଜୀବନ-ଚରିତ ନ ଭାବି ଏକ ସରସ ଉପନ୍ୟାସ ବା କାହାଣୀ ରୂପେ ଭାବିଥାଏ । ମରହଟ୍ଟା ଶାସନ କାଳରୁ ତାଙ୍କର ବଂଶଲତାର ପରିଚୟ ସେ ଦେଇଛନ୍ତି । ଇଷ୍ଟଇଣ୍ଡିଆ କଂପାନୀ ବାଲେଶ୍ୱର ଅଧିକାର କରିବା ସମୟର ଚିତ୍ର ସେ ଦେଇଛନ୍ତି । ତାଙ୍କର ଠାକୁର ମା କୁଚିଳାଦେଈ ୧୮୦୩ ସାଲରେ ଏହି ଘଟଣା ପ୍ରତ୍ୟକ୍ଷ ଦେଖିଥିଲେ । ତାଙ୍କଠାରୁ ଶୁଣି ଫକୀରମୋହନ ଲେଖିଛନ୍ତି, ଇଷ୍ଟଇଣ୍ଡିଆ କଂପାନୀର ଫୌଜ

ଦକ୍ଷିଣ ଏବଂ ପୂର୍ବ ଦୁଇ ଦିଗରୁ ବାଲେଶ୍ୱରକୁ ଆସିଲେ । ଇଷ୍ଟଇଣ୍ଡିଆ କମ୍ପାନୀର ଫୌଜ ବାଲେଶ୍ୱରର ପୂର୍ବାଞ୍ଚଳ ବଲରାମଗଡ଼ି ନାମକ ସ୍ଥାନରେ ପହଞ୍ଚିବା ସମ୍ବାଦ ପାଇ ଗ୍ରାମବାସୀମାନେ ଘର ଦ୍ୱାର ଛାଡ଼ି ପରିବାର ଘେନି ଜଙ୍ଗଲକୁ ପଳାଇଲେ । କମ୍ପାନୀ ଫୌଜ ବାଲେଶ୍ୱର ଅଧିକାର କରିବା ପରେ ଶାନ୍ତି ସ୍ଥାପିତ ହେଲା ଓ କମ୍ପାନୀର ଅଭୟବାଣୀ ପାଇ ଗ୍ରାମବାସୀମାନେ ନିଜ ନିଜ ଘରକୁ ଫେରିଆସିଲେ । କେବଳ ଇଷ୍ଟଇଣ୍ଡିଆ କମ୍ପାନୀ ସମୟର କଥା ନୁହେଁ, ଗ୍ରାମର ଅତି ବୁଢ଼ାମାନଙ୍କଠାରୁ ଲେଖକ ମରହଟ୍ଟା ସମୟର ଅନେକ କଥା ଶୁଣି ଲେଖିଛନ୍ତି । ମରହଟ୍ଟା ଶାସନର ଅବସାନ ସମୟରେ ଦେଶରେ ଏପରି ଅରାଜକତା ବ୍ୟାପିଥିଲା ଯେ ଚୋର, ଡକାୟତ ଓ ନାଗା ସନ୍ନ୍ୟାସୀମାନଙ୍କ ଉପଦ୍ରବରେ ଲୋକମାନେ ଭୀତତ୍ରସ୍ତ ହୋଇଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀର ଶାସନରେ ଧନ ଜୀବନର ନିରାପଦ୍ଧି ରକ୍ଷା ହୋଇଥିଲା । ନିଜର ଶୈଶବ, ବିଦ୍ୟାରମ୍ଭ ବିଷୟ ଲେଖିସାରି ଲେଖକ ଅଫିମ ସିଲ୍ଲାଇ ଓ ନିମକ ମାହାଲରେ କାର୍ଯ୍ୟ ଶିଖିଥିଲେ । ନିମକ ମାହାଲ ଉଠିଯିବା ପରେ ଲେଖକ ବାରବାଟୀ ସ୍କୁଲରେ ଅଧ୍ୟୟନ ଓ ଅଧ୍ୟାପନ କରିଥିଲେ । ବାରବାଟୀ ସ୍କୁଲରେ ପାଠ ପଢ଼ିବା ସମୟରେ ହରେକୃଷ୍ଣ ପାଣିଗ୍ରାହୀ ନାମକ ଜଣେ ଓଡ଼ିଆ, ପଣ୍ଡିତଙ୍କର ପାଠ ପଢ଼ାଇବା ପ୍ରଣାଳୀ ସେ ଲେଖିଛନ୍ତି । "କୌଣସି ଦିନରେ ଗୋଟିଏ କାକ ଖଣ୍ଡିଏ ମାଂସ ମୁଖରେ ଧରି ଗୋଟାଏ ବୃକ୍ଷ ଡାଳରେ ବସିଥିଲା ।" ଶିକ୍ଷକ ଏହାକୁ ବୁଝାଉଥିଲେ— "କୌଣସି ଦିନରେ କି କେଉଁ ଅହ୍ନରେ, ଗୋଟିଏ କାକ କି ଏକଗୋଟି ବାୟସ, ଖଣ୍ଡିଏ ମାଂସ କି ଖଣ୍ଡିଏ ପଲ, ମୁଖରେ ଧରି କି ବଦନରେ ଧାରଣ କରି, ଗୋଟାଏ ବୃକ୍ଷ କି ଏକଗୋଟି ମହୀରୁହ, ଡାଳରେ କି ଶାଖାରେ

ବସିଥିଲି କି ଉପଦେଶନ କରିଥିଲି" । ଓଡ଼ିଆ ପଣ୍ଡିତମାନଙ୍କର ଶିକ୍ଷାଦାନ ପଦ୍ଧତିକୁ ସେ ଏହିପରି ଭାବରେ ସମାଲୋଚନାତ୍ମକ ଦୃଷ୍ଟି-କୋଣରେ ପ୍ରକାଶ କରିଅଛନ୍ତି । ସେ ବାରବାଟୀ ସ୍କୁଲରେ ପଢ଼ୁଥିବା ସମୟରେ ରାଧାନାଥ ରାୟ ଏଣ୍ଟ୍ରାନ୍ସ ପାଶ୍ କରିଥିଲେ (୧୮୬୩) । ୧୮୬୪ ସାଲରେ ବାଲେଶ୍ୱର ମିସନ୍ ସ୍କୁଲରେ ଫକୀରମୋହନ ପ୍ରଧାନ ଶିକ୍ଷକରୂପେ ମାସିକ ଦଶଟଙ୍କା ବେତନରେ ଯୋଗଦେଲେ । ଏହିଠାରେ ଶିକ୍ଷକତା କରୁଥିବା ସମୟରେ ବାଇବେଲର ଓଡ଼ିଆ ଅନୁବାଦ ସଂଶୋଧନ କରିବାକୁ ଯାଇ ସେ ମିଲର ସାହେବଙ୍କର ଦୃଷ୍ଟିରେ ପଡ଼ିଥିଲେ । ପୂର୍ବ ଅନୁବାଦ ଥିଲା—"ଅଛନ୍ତି ଏପରି ଡେର ଲୋକ ପୃଥିବୀରେ, ଯେଉଁମାନେ ବିଶ୍ୱାସ କଲେ ନାହିଁ ଅଛନ୍ତି ପରମେଶ୍ୱର ଜଗତରେ" । ଫକୀରମୋହନ ଲେଖିଲେ, "ପରମେଶ୍ୱରଙ୍କର ଅସ୍ତିତ୍ୱ ଅସ୍ୱୀକାର କରନ୍ତି ଏ ପ୍ରକାର ଲୋକ ପୃଥିବୀରେ ଅନେକ ଅଛନ୍ତି ।" ଏହି ଧାଡ଼ିଟି ଶୁଣି ଭକାଶିବାବୁ ରାଗରେ ଅସ୍ଥିର ହୋଇ ପଡ଼ିଲେ । 'ଅସ୍ତିତ୍ୱର'ର ଅର୍ଥ ନ ଜାଣି ଈଶ୍ୱରଙ୍କର ଅସ୍ଥି ବୋଲି ଧରି ନେଇ ଫକୀରମୋହନଙ୍କ ପ୍ରତି କ୍ରୋଧ ପ୍ରଦର୍ଶନ କଲେ । ଯେତେ ବୁଝାଇଲେହେଁ ଭକାଶିବାବୁ ବା ମିଲର ସାହେବ କେହି ତାଙ୍କ କଥା ବୁଝିଲେ ନାହିଁ । ସାହେବଙ୍କର ଧର୍ମ ପ୍ରଚାରର ଭାଷା ଫକୀରମୋହନ ଲେଖିଛନ୍ତି—"ଏ ବାଇମାନେ, ତୁମ୍ଭମାନଙ୍କ ଜଗନ୍ନାଥ କାଷ୍ଠ ଅଛି, ପାଷାଣ ଅଛି, ସେ କିଛି ନୁହେଁ । ତାକୁ ଭଜିଲେ ଅନନ୍ତ ନରକରେ ପଡ଼ିବ । ପ୍ରଭୁ ଯୀଶୁଖ୍ରୀଷ୍ଟ ତ୍ରାଣକର୍ତ୍ତା ଅଟନ୍ତି । ତାଙ୍କୁ ଭଜିଲେ ଆଲୁଅ ପାଇବ ।" କେହିଯେବେ ସାହେବଙ୍କ କଥାରେ ପ୍ରତିବାଦ କରେ, ରାଗିଯାଇ ସାହେବ ଅଗରେ ଯାହାକୁ ପାଆନ୍ତି ଘୋଡ଼ା ଚାବୁକରେ ପିଟନ୍ତି । ଫଳରେ ଫୌଜଦାରୀ ମକଦ୍ଦମା ଦାୟେର ହୁଏ ।

ଫକୀରମୋହନଙ୍କ ଏହି ବର୍ଣ୍ଣନାରୁ ସେସମୟରେ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାରର ବାସ୍ତବରୂପ ଦେଖାଯାଏ । ସେହି ସମୟରେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ ବାମ୍‌ସ ତାଙ୍କର **Comparative Grammar of Indian Languages** ଲେଖିଥିଲେ । ସେ ସମୟରେ ବାଲେଶ୍ୱରରେ ଓଡ଼ିଆ ଏବଂ ବଙ୍ଗାଳୀମାନଙ୍କର ବିବାଦ ଯଥେଷ୍ଟ ଥିଲା । ହାଲମ୍ ସାହେବଙ୍କର ସାହାଯ୍ୟ ସହାନୁଭୂତି ଫକୀରମୋହନଙ୍କ ଶିକ୍ଷକଜୀବନରେ ସ୍ମରଣ କରିବାର କଥା । ୧୮୬୭ ସାଲରେ ଓଡ଼ିଶାରେ ଭୀଷଣ ନଅଙ୍କ ଦୁର୍ଭିକ୍ଷର ବର୍ଣ୍ଣନା ଫକୀରମୋହନ ପ୍ରତ୍ୟକ୍ଷଦର୍ଶୀ ଭାବରେ ଦର୍ଶାଇଅଛନ୍ତି । ୧୮୬୮ସାଲରେ ବାଲେଶ୍ୱରରେ ସେ ପ୍ରଥମ ଛାପାଖାନା ସ୍ଥାପନ କରିଥିଲେ । ଜୀବନରେ ୧୮୫୭ ଏବଂ ୧୮୭୧ରେ ଦୁଇଥର ତାଙ୍କୁ ବିବାହ କରିବାକୁ ପଡ଼ିଥିଲା । ୧୮୭୧ରୁ ୧୮୭୫ ପର୍ଯ୍ୟନ୍ତ ଫକୀରମୋହନ ନୀଳଗିରି, ୧୮୭୭ରୁ ୧୮୭୭ ଯାଏ ଡମପଡ଼ାରେ ଦେଓ୍ୱାନୀ କରିଥିଲେ । ଏହି ସମୟରେ ଅନେକ ଘଟଣା ସେ ବର୍ଣ୍ଣନା କରିଛନ୍ତି । ୧୮୭୭ରୁ ୧୮୮୩ ପର୍ଯ୍ୟନ୍ତ ଢେଙ୍କାନାଳର ଆସିଷ୍ଟାଣ୍ଟ୍ ମ୍ୟାନେଜର ରୂପେ ରହିବାପରେ ୧୮୮୪ରୁ ୧୮୮୬ ପର୍ଯ୍ୟନ୍ତ ଦଶପଲ୍ଲାର ଦେଓ୍ୱାନ ହେଲେ । ଦଶପଲ୍ଲା ଛାଡ଼ି ୧୮୮୬-୮୭ରେ ପୁଣି ପାଲଲହଡାରେ ଦେଓ୍ୱାନ ହେଲେ । ୧୮୮୭ରୁ ୧୮୯୨ ପର୍ଯ୍ୟନ୍ତ କେନ୍ଦୁଝରରେ ମ୍ୟାନେଜର ରହିଲେ । ୧୮୯୧-୯୨ସାଲରେ କେନ୍ଦୁଝରର ବିଖ୍ୟାତ ଇତିହାସ ଦକ୍ଷତାର ସହିତ ବର୍ଣ୍ଣନା କରିଅଛନ୍ତି । ୧୮୯୪ରୁ ୧୮୯୬ ପର୍ଯ୍ୟନ୍ତ ଡମପଡ଼ାରେ ଦ୍ୱିତୀୟ ଥର ଦେଓ୍ୱାନ ହେଲେ । ୧୮୯୬ରୁ ୧୯୦୫ ସାଲ ପର୍ଯ୍ୟନ୍ତ ଫକୀରମୋହନ କଟକରେ ଅବସ୍ଥାନ କରିଛନ୍ତି ଏବଂ ୧୯୦୫ରୁ ୧୯୧୮ସାଲ ପର୍ଯ୍ୟନ୍ତ ବାଲେଶ୍ୱରରେ କଟାଇଛନ୍ତି ।

ଫକୀରମୋହନଙ୍କ କର୍ମମୟ ଜୀବନରେ ବିଭିନ୍ନ ସ୍ଥାନର ଅନୁଭୂତି, ଶାସନକାର୍ଯ୍ୟ ସମୟରେ ବିଭିନ୍ନ ସ୍ଥାନରେ ଅଭିଜ୍ଞତା, ବିଭିନ୍ନ ଶ୍ରେଣୀର ଲୋକମାନଙ୍କ ସହିତ ସମ୍ପର୍କ ସ୍ଥାପନ ପ୍ରଭୃତି ତାଙ୍କର ସୃଷ୍ଟି ସମ୍ପଦଲାଗି ଯଥେଷ୍ଟ ପ୍ରେରଣା ଦାନ କରିଅଛି । ତାଙ୍କର ଆତ୍ମଜୀବନ ଚରିତରେ ବର୍ଣ୍ଣିତ ଘଟଣାବଳୀ ଯେ କେବଳ ତାଙ୍କର ଜୀବନକୁ କେନ୍ଦ୍ର କରି ଲିଖିତ ତା ନୁହେଁ, ଦେଶ ଓ ଜାତିର ସ୍ୱାର୍ଥଲାଗି ତାଙ୍କ ଜୀବନର ବିଭିନ୍ନ କାର୍ଯ୍ୟ ଏବଂ ସେ ସମୟର ସମଗ୍ର ଓଡ଼ିଶାର ରାଜନୈତିକ ତଥା ସାଂସ୍କୃତିକ ଘଟଣା ପ୍ରବାହର ଏକ ସାର୍ଥକ ଐତିହାସିକ ପ୍ରତିଲିପି । ଫକୀରମୋହନଙ୍କ ଜୀବନକାଳର ଓଡ଼ିଶାର ଇତିହାସ ଜାଣିବା ନିମିତ୍ତ ତାଙ୍କର ଆତ୍ମ-ଜୀବନ ଚରିତ ଅନେକାଂଶରେ ସାହାଯ୍ୟ କରେ ।

## (୧୧) ଫକୀରମୋହନଙ୍କ କବିତା ।

'ଉତ୍କଳ ଭ୍ରମଣଂ' ପହିଲ୍ ଗସ୍ତ ୧୮୯୨ ସାଲ ମାର୍ଚ୍ଚ ମାସରେ ପ୍ରକାଶିତ ହୋଇଥିଲା । ସେନାପତିଙ୍କ ଜୀବନ-ଚରିତରେ ଲେଖାଅଛି ଯେ କେନ୍ଦୁଝର ଗଣ୍ଡଗୋଳ ପରେ ଆନନ୍ଦପୁରରେ ଦୁଇଦିନ ଭିତରେ ସେ ଏହାକୁ ପ୍ରକାଶ କରିଅଛନ୍ତି । ଏହାପରେ ସେ ବାଲେଶ୍ୱର ଆସିଛନ୍ତି । ତେଣୁ ଦୁସରି ଗସ୍ତ ବାଲେଶ୍ୱରରେ ଲେଖିଥିବା ସମ୍ଭବପର । ଏହା ସମଗ୍ର ଓଡ଼ିଶାରେ ଏକ ଚାଞ୍ଚଲ୍ୟ ସୃଷ୍ଟି କରି ଦେଇଥିଲା । ଏଥିରେ ସେ ସମୟର ଓଡ଼ିଶାର ସମସ୍ତ ଗଣ୍ୟମାନ୍ୟ ବ୍ୟକ୍ତି ସ୍ଥାନ ପାଇଥିଲେ । ଏହି ସମସ୍ତ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କର ଦୋଷଗୁଣରେ ଆଲୋଚନା ଅତି ନିର୍ଭୀକ ଭାବରେ କରାଯାଇଥିଲା । ଇନ୍ଦ୍ରଧନୁ ଓ ବିଜୁଳୀ ବାଦବିସମ୍ବାଦ ସମୟରେ

ଯେତେବେଳେ କି ଦଳଗତ ଭାବରେ ଉପେନ୍ଦ୍ର ଓ ରାଧାନାଥ କେନ୍ଦ୍ରିକ କୁତ୍ସାରଟନା କରାଯାଉଥିଲା, ସେହି ସମୟରେ ଉତ୍କଳ ଭ୍ରମଣଂ ପ୍ରକାଶ ପାଇଛି । ନିଜକୁ ଅନ୍ତରାଳରେ ରଖି ଅନ୍ୟମାନଙ୍କୁ ନିନ୍ଦା କରିବା ମାତ୍ର ଯେତେବେଳେ ଓଡ଼ିଶାରେ ଅତି ସାଧାରଣ କଥା ହୋଇଉଠିଥିଲା, ସେତେବେଳେ ଫକୀରମୋହନ ଅତି ନିର୍ଭୀକ ଭାବରେ ଗଣ୍ୟମାନ୍ୟବ୍ୟକ୍ତିଙ୍କର ସମାଲୋଚନା କରିଅଛନ୍ତି । ଏଥିରେ ପାନବାଲି ପାବଣିମାଆଠୁଁ ଆରମ୍ଭ କରି ପାରଳା ମହାରାଜାଙ୍କ ପର୍ଯ୍ୟନ୍ତ ବହୁବ୍ୟକ୍ତିଙ୍କର ନାମୋଲ୍ଲେଖ ଦେଖିବାକୁ ମିଳେ । ପୁଣି ସମାଲୋଚନା ଗୁଡ଼ିକ ଏପରି ଲେଖାଯାଇଛି ଯେ, ସେ ସମୟର ଘଟଣା ପ୍ରବାହ ସହିତ ପରିଚିତ ନଥିବା ଲୋକ ସହଜରେ ତାକୁ ବୁଝିପାରିବ ନାହିଁ । ଭକ୍ତକବି ମଧୁସୂଦନଙ୍କ ବିଷୟରେ ସେ ଲେଖିଛନ୍ତି—

"ହେ ମଧୁସୂଦନ ଋଷିଚରିତ ମନୁଷ୍ୟ
ବଞ୍ଚିଥାଅ ଭାଇ ନେଇ ମୋହର ଆୟୁଷ
ଆଦର୍ଶ ମଣିଷ ଯେବେ ଦେଖିବାକୁ ଲୋଡ଼
ଧାଇଁଯାଇ ଥରେ ଦେଖିଆସ ମଧୁରାଓ ।"

ଗୌରୀଶଙ୍କରଙ୍କ ବିଷୟରେ—

"ହେ ଗୌରୀଶଙ୍କର ଧନ୍ୟ ତୁମରି ସାହସ
ଦୀପିକା ଲେଖୁଛ ବସି ତିରିଶ ବରଷ ।"

କବି ନନ୍ଦକିଶୋରଙ୍କ ବିଷୟରେ ସେ ଲେଖିଛନ୍ତି—

"ଉତ୍କଳର ଯୋଗ୍ୟପୁତ୍ର ଶ୍ରୀ ନନ୍ଦକିଶୋର
ରୂପେଗୁଣେ ଯୋଗ୍ୟତାରେ ଶ୍ରୀ ନନ୍ଦକିଶୋର ।

ତୁମର କବିତାମାଳା ଯାଏ ଲୋକେ କହି
ଚନ୍ଦ୍ରାବଳୀ କଳମରୁ ପଡ଼ୁଛି ବା ବହି,
ଓକଜନେ କିତାପ ଲେଖିଅଛ ସାନ ସାନ
ମୋ ବସ୍ତିରେ ପରିଚୟ କବିଙ୍କୁ ମହାନ ।"

ଏହିପରି ଭାବରେ ସେ ଅନେକ ବ୍ୟକ୍ତିଙ୍କୁ ସମାଲୋଚନା କରିଛନ୍ତି । 'ମୁଁ ହାଟବାହୁଡ଼ା' କବିତାରେ ତାଙ୍କର ଯେପରି ଦୃଷ୍ଟିକୋଣର ପ୍ରକାଶ ପାଇଛି 'ଉତ୍କଳ ଭ୍ରମଣଂ'ରେ ସେହି ମନୋବୃତ୍ତିର ପ୍ରକାଶ ମଧ୍ୟ ହୋଇଅଛି ।

"Educated ବାବୁମାନଙ୍କର ବ୍ୟବହାର
ଦେଖି ଦେଖି ହେଲଣି ମୁଁ ନିହାତି ନାଗର ।
Old fool prejudice ପକାଇଛ କାଟି
କଥାବେଳେ ମେଲିଯାଏ ଦେଖ ଫୁଟ ପାଟି ।
Science, Logic ପକାଇଛ ଖୁଣ୍ଟି
ବାଟଭୂଲ ଜାଣୁନାହିଁ ପଡ଼ିଅଛ ଝୁଣ୍ଟି ।
କୋଅଣ୍ଟ୍ ସିଦ୍ଧାନ୍ତ ଘୋଷିବାରେ ଦେଇମନ
ଫିଙ୍ଗାଇ ଦେଖିଲ ନାହିଁ ଗୌତମ ଦର୍ଶନ ।
ଇଂରେଜୀ ନାଟକ କାବ୍ୟ ଘେନିଅଛ ମାତି
ଫିଙ୍ଗିଦେଇ ଭଟ୍ଟି କାଳିଦାସ ଭବଭୂତି ।"

ତାଙ୍କର 'ପୁଷ୍ପମାଳା' କବିତା ପ୍ରକାଶ ପାଏ ୧୮୯୪ ସାଲରେ । ଏଥିରେ ୪୪ଟି କବିତା ସ୍ଥାନ ପାଇଅଛି । ବିଭିନ୍ନ ପ୍ରକାର ବିକ୍ଷିପ୍ତ ଭାବନା ଏବଂ ବିଷୟକୁ ନେଇ ଏ କବିତାଗୁଡ଼ିକ ରଚିତ । 'ଅବସର ବାସରେ'ର ପ୍ରଥମ ସଂସ୍କରଣ ୧୯୦୮ ସାଲରେ ପ୍ରକାଶ

ଯାଇଅଛି । ଏଥିରେ ୭ଗୋଟି ଅଧ୍ୟାୟରେ ୧୯୬ଗୋଟି କବିତା ସନ୍ନିବେଶିତ । ଏଥିରେ ସନ୍ନିବେଶିତ କବିତାଗୁଡ଼ିକ ସେହିପରି ବିଭିନ୍ନ ବିଷୟକୁ ନେଇ ରଚିତ । 'ବୌଦ୍ଧାବତାର କାବ୍ୟ' ପ୍ରକାଶ ପାଏ ୧୯୦୯ ସାଲରେ । ଏହା ଊନବିଂଶ ସର୍ଗରେ ବିଭକ୍ତ । ଭାରତବର୍ଷର ଧର୍ମ-ଜଗତରେ ଅଧଃପତନର କାରଣରୁ ଗୌତମବୁଦ୍ଧଙ୍କ ଜନ୍ମଠାରୁ ଆରମ୍ଭ କରି ତାଙ୍କର ମହାପ୍ରୟାଣ ପର୍ଯ୍ୟନ୍ତ ଘଟଣାଗୁଡ଼ିକ ଏହି କାବ୍ୟରେ ବର୍ଣ୍ଣିତ । "ପୂଜାଫୁଲର" ପ୍ରଥମ ସଂସ୍କରଣ ୧୯୧୨ ସାଲରେ ପ୍ରକାଶିତ ହୋଇଥିଲା ଓ 'ଧୂଳି' ମଧ୍ୟ ୧୯୧୨ ସାଲରେ ପ୍ରକାଶିତ ହୋଇଥିଲା । ଏହି ଦୁଇଟି କବିତାପୁସ୍ତକରେ ସେହିପରି ବିଭିନ୍ନ ବିକ୍ଷିପ୍ତ ବିଷୟକୁ ନେଇ କବିତାଗୁଡ଼ିଏ ଲେଖାଯାଇଛି । ଏହା ବ୍ୟତୀତ ବିଭିନ୍ନ ପତ୍ର-ପତ୍ରିକାରୁ ଆହୁରି ଅନେକ କ୍ଷୁଦ୍ର କବିତା ମିଳିଥାଏ । ଏ ସବୁ କବିତାଗୁଡ଼ିକରେ ଫକୀରମୋହନ ସେନାପତିଙ୍କର ବାସ୍ତବ ରୂପର ପରିଚୟ ବିଶେଷ ଭାବରେ ମିଳେ ନାହିଁ । ଉପନ୍ୟାସ ଓ କ୍ଷୁଦ୍ରଗଳ୍ପର ସ୍ରଷ୍ଟା ହିସାବରେ ସେ ଯେଉଁ ଗୌରବ ପାଇବାର କଥା, କବି ହିସାବରେ ପାଠକ ବା ସମାଲୋଚକ ସେ ଗୌରବ ତାଙ୍କୁ ଦିଏ ନାହିଁ । ଏହି କବିତାଗୁଡ଼ିକରେ ତାଙ୍କ ନିଜ ଜୀବନର ଅନେକ ସୂକ୍ଷ୍ମ ଅନୁଭୂତି ଯେପରି ଭାବରେ ରୂପାୟିତ ହୋଇଛି, ଆଦର୍ଶ ସ୍ଥାପନ ନିମିତ୍ତ ମାତୃଗତ ଦୃଷ୍ଟିରୁ ଅନେକ ବିଷୟରେ ମୌଳିକ ସତ୍ୟର ସେହିପରି ପ୍ରକାଶ ହୋଇଅଛି । ଯଦି ଫକୀରମୋହନ ଉପନ୍ୟାସ ଏବଂ ଗଳ୍ପ ରଚନାରେ ହାତ ନ ଦେଇଥାନ୍ତେ, ତେବେ ଆଧୁନିକ ଯୁଗରେ ସେ କବି ହିସାବରେ ପରିଚିତ ହୋଇଥାନ୍ତେ । ମାତ୍ର ତାଙ୍କର ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ସୃଷ୍ଟିର ବିରାଟ ପ୍ରତିଭା ତଳେ କବି ଜୀବନର ସ୍ପଷ୍ଟ ପରିଚୟ

ଅସ୍ପଷ୍ଟ ଭାବରେ ରହିଯାଇଛି । ଏହି ଧୂଳିମାଟିର ଜଗତରେ କବିର ଅନୁଭୂତି ପାଠକ ମନରେ କବି ଜୀବନରେ ଅନେକ ସତ୍ୟକଥାକୁ ପ୍ରକାଶ କରେ । ଫୁଲଟିଏ ଫୁଟିଲେ ତାର ସୌନ୍ଦର୍ଯ୍ୟରେ କବି ମୋହିତ ହୁଏ, ତାର ସୌରଭରେ କବି ଉନ୍ମାଦ ହୁଏ । ସେହି ଫୁଲର ସୌନ୍ଦର୍ଯ୍ୟ ଏବଂ ସୌରଭ କବି ମନଶ୍ଚକ୍ଷୁରେ କି ପ୍ରକାର ପ୍ରତିଭାତ ହୁଏ, ତାହା ସେ ଜଗତକୁ ଜଣାଏ । ଠିକ୍ ଏହିପରି ଫକୀରମୋହନଙ୍କ ମନଶ୍ଚକ୍ଷୁର ଅନୁଭୂତି ଓଡ଼ିଆ ସାହିତ୍ୟରେ ଯଥେଷ୍ଟ ରୂପରେ ପ୍ରକାଶିତ ହୋଇଥିଲେହେଁ ସମାଜ ଓ ସମାଜର ବେଷ୍ଟନୀ ଭିତରେ ତାଙ୍କର ଚର୍ମଚକ୍ଷୁର ଅନୁଭୂତି ଯାହା ପ୍ରକାଶ କରିଅଛି, ତାହା ତୁଳନାରେ ପ୍ରଥମଟି ନିଷ୍ପ୍ରଭ । ଉପନ୍ୟାସର ନିଷ୍ଠୁର ବାସ୍ତବ କଙ୍କାଳ ଭିତରେ ବାସ୍ତବତାକୁ ଚିତ୍ରଣ କରିବା ନିମିତ୍ତ କଠିନ ହୃଦୟ ଯେଉଁ ସେନାପତିଙ୍କର ଥିଲା, ସେହି ସେନାପତିଙ୍କର ଥିଲା କବିତାର ସରସ କୋମଳ କଳେବର ଭିତରେ କଳ୍ପନା ଓ ବାସ୍ତବକୁ ରୂପାୟିତ କରିବାର ସମ୍ବେଦନଶୀଳ ହୃଦୟ । ଏହା କେବଳ ତାଙ୍କର ପକ୍ଷରେ ହିଁ ସମ୍ଭବ ।

## ( ୧୬ ) ଫକୀରମୋହନଙ୍କର ଅନୁବାଦ ।

ଫକୀରମୋହନ ସେନାପତିଙ୍କର ସର୍ବପ୍ରଥମ ଅନୁବାଦ ୧୮୬୭ ସାଲରେ ପ୍ରକାଶ ପାଇଛି । ଏହା ହେଉଛି ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ବଙ୍ଗଳା ପୁସ୍ତକ (ଜୀବନୀ)ର ଅନୁବାଦ । ୧୮୮୦ ସାଲରେ ରାମାୟଣ ଆଦିକାଣ୍ଡ, ୧୮୮୧ରେ ଅଯୋଧ୍ୟା କାଣ୍ଡ, ୧୮୮୪ରେ ଆରଣ୍ୟ କାଣ୍ଡ, ୧୮୮୫ରେ କିଷ୍କିନ୍ଧ୍ୟା କାଣ୍ଡ,

୧୮୮୭ରେ ସୁନ୍ଦର କାଣ୍ଡ, ୧୮୯୦ରେ ଲଙ୍କା କାଣ୍ଡ ଓ ୧୮୯୦ରେ ଉତ୍ତର କାଣ୍ଡ ପ୍ରକାଶିତ ହୋଇଛି । ଏହି ରାମାୟଣ ସଂସ୍କୃତ-ରାମାୟଣର ଓଡ଼ିଆ ପଦ୍ୟାନୁବାଦ । ମହାଭାରତ ୧୮୮୬ରେ ଆଦିପର୍ବ, ୧୮୮୭ରେ ସଭାପର୍ବ ପ୍ରକାଶ ପାଇ ବନପର୍ବ ଓ ବିରାଟପର୍ବ ତାପରେ ପ୍ରକାଶ ପାଇଛି । ଶ୍ରୀମଦ୍ ଭଗବଦଗୀତା ୧୮୮୫ ସାଲ ବେଳକୁ ରଚିତ ହୋଇଥିଲା । ଖିଳ ହରିବଂଶ ୧୯୦୨ ସାଲରେ ପ୍ରକାଶ ପାଇଥିଲା । ବ୍ରାହ୍ମଣନାଂ ସନ୍ଧ୍ୟାପଦ୍ଧତିଃ (୧୯୧୦), ଛାନ୍ଦୋଗ୍ୟ ଉପନିଷଦ୍ (୧୯୧୭), ଉପନିଷଦ୍ ସଂଗ୍ରହ ୧୯୦୪ରେ ପ୍ରକାଶ ପାଇଥିଲା । ଏହା ବ୍ୟତୀତ ଫକୀରମୋହନଙ୍କ ଅନ୍ୟାନ୍ୟ କ୍ଷୁଦ୍ର କବିତା ମଧ୍ୟରେ କେତେକ ଅନୁବାଦ ମଧ୍ୟ ଦେଖାଯାଏ । ତାଙ୍କର ଯାଜ୍ଞବଲ୍କ୍ୟ ମୈତ୍ରେୟୀ ସମ୍ବାଦ ୧୯୧୨ ସାଲରେ ପ୍ରକାଶିତ ହୋଇଥିଲା, ମାତ୍ର ଏହା ଅନୁବାଦ ନୁହେଁ । ବୃହଦାରଣ୍ୟକ ଉପନିଷଦ୍‌ରେ ଯାଜ୍ଞବଲ୍କ୍ୟ ମୈତ୍ରେୟୀ ସମ୍ବାଦ ଅବଲମ୍ବନରେ ଲିଖିତ । ତାଙ୍କର ଅନୁବାଦ ବିଷୟରେ ବିଭିନ୍ନ ସମୟରେ ପତ୍ରପତ୍ରିକାରେ ଅନେକ ମତାମତ ପ୍ରକାଶ ପାଇଛି । ସଂସ୍କୃତ ଭାଷାର କଠିନ ବନ୍ଧନ ଭିତରେ ଧର୍ମ-ଶାସ୍ତ୍ରକୁ ସାଧାରଣ ଲୋକମାନଙ୍କର ପାଠୋପଯୋଗୀ କରିବା ଇଚ୍ଛାରେ ଫକୀରମୋହନ ଯାହା ସବୁ ଅନୁବାଦ କରିଛନ୍ତି, ସେ ସବୁର ମୂଲ୍ୟ ନିର୍ଣ୍ଣିତ ରୂପରେ ଥିଲେ ହେଁ ଆଧୁନିକ ଓଡ଼ିଆ ସାହିତ୍ୟରେ ପୁରାତନର ପୁନରାଗମନକୁ ପାଠକଶ୍ରେଣୀ ଅଭିନନ୍ଦନ ଜଣାଇବାକୁ ସମର୍ଥ ହୋଇ ପାରିନାହିଁ । କବିତା ବିଷୟରେ ଫକୀରମୋହନଙ୍କ ପ୍ରତି ଯେଉଁ ମତ ପ୍ରଯୁଜ୍ୟ, ପୁରାଣ ଶାସ୍ତ୍ର ଅନୁବାଦ କ୍ଷେତ୍ରରେ ସେହି ମତ ମଧ୍ୟ ପ୍ରଯୁଜ୍ୟ । ତାଙ୍କର ପୁରାଣ ଅନୁବାଦର ମହତ୍ତ୍ୱ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପସ୍ରଷ୍ଟାର ମହତ୍ତ୍ୱ ତଳେ ଲୁକ୍କାୟିତ ।

## (୧୩) ଫକୀରମୋହନଙ୍କର ପ୍ରବନ୍ଧାବଳୀ ।

ବିଭିନ୍ନ ସମୟରେ ଓଡ଼ିଶାର ପତ୍ର ପତ୍ରିକାରେ ଫକୀରମୋହନ ଅନେକ ତତ୍‌କାଳୀନ ସମସ୍ୟାକୁ କେନ୍ଦ୍ରକରି ପ୍ରବନ୍ଧ ଲେଖିଥିଲେ । ସେଗୁଡ଼ିକ ପତ୍ର ପତ୍ରିକାରେ ପ୍ରକାଶ ପାଇବା ବ୍ୟତୀତ ନିର୍ଦ୍ଦିଷ୍ଟ ପୁସ୍ତକ ଆକାରରେ ପ୍ରକାଶିତ ହୋଇନାହିଁ । ଫକୀରମୋହନଙ୍କ ଗ୍ରନ୍ଥାବଳୀର ଶେଷ ଆଡ଼କୁ ଏଗୁଡ଼ିକ ସନ୍ନିବେଶିତ ହୋଇଅଛି । ଉତ୍କଳ ଭାଷାର ଭୂତ ଭବିଷ୍ୟତ, ସିରାଜଉଦ୍ଦୌଲାଙ୍କ ଗୃହଶାଳୀ ଓ ଗୁରୁଦକ୍ଷିଣା, ଓ୍ୱାଲଟିଅର ଦର୍ଶନ, ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ, କବି ଗୋପାଳକୃଷ୍ଣ ପଟ୍ଟନାୟକ, ମାଇକେଲ୍ ମଧୁସୂଦନ ଦତ୍ତ ଓ ମେଘନାଦ ବଧ କାବ୍ୟ, ବାଲେଶ୍ୱର ବନ୍ଦରରେ ଓଲନ୍ଦାଜ ଜାତି, ମେଘଦୂତର ବଙ୍ଗାନୁବାଦ, ଶୁଦ୍ର ଓ ବେଦାଧିକାର, ଦୁଇଟି ଅଭିଭାଷଣ ଓ ଗୋଟିକର ପ୍ରତିବାଦ ( ଉତ୍କଳ ସାହିତ୍ୟର ପ୍ରାଣ ପ୍ରତିଷ୍ଠା )ଏହି କେତୋଟି ପ୍ରବନ୍ଧ ଫକୀରମୋହନ ଲେଖିଥିଲେ । ଏହି ପ୍ରବନ୍ଧଗୁଡ଼ିକର ସାମୟିକ ଗୁରୁତ୍ୱ ଦୃଷ୍ଟିରୁ ତତ୍କାଳୀନ ସମୟ ଓ ପରିସ୍ଥିତିରେ ମୂଲ୍ୟ ଯଥେଷ୍ଟ ଭାବରେ ଅଛି । ପ୍ରବନ୍ଧର କଳେବର ଭିତରେ ସର୍ବତ୍ର ଫକୀରମୋହନଙ୍କର ସ୍ୱାଧୀନ ଚିନ୍ତାଧାରା ସହିତ ଦେଶାତ୍ମବୋଧର ଗଭୀର ପରିଚୟ ମିଳେ । ଅନେକ ସ୍ଥଳରେ ଫକୀରମୋହନ ପ୍ରାଚୀନପନ୍ଥୀ ହୋଇ ପଡ଼ିଥିଲା ପରି ମନେହୁଏ ।

ଏ ପ୍ରାଚୀନ ପନ୍ଥା ପ୍ରକାରାନ୍ତରେ ଫକୀରମୋହନଙ୍କର ନିଜ ଦେଶ ଓ ଜାତିର ଐତିହ୍ୟ ପ୍ରତି ଗଭୀର ଅନୁରାଗର ସୂଚନା ଦିଏ । ଓଡ଼ିଆ ଭାଷା ବିଷୟରେ ଆଲୋଚନା କରିବାକୁ ଯାଇ ସେହି କେତେ ବର୍ଷର ଭାଷାର ବିକାଶକୁ ୩ଟି ଯୁଗର ସୀମା ଭିତରେ ଆବଦ୍ଧ କରିଅଛନ୍ତି—ମରହଟ୍ଟା ଯୁଗ, ଇଂରେଜ ଯୁଗ ଓ ରେଭେନସା ଯୁଗ ।

ଏହି ଭାଷା ଆଲୋଚନା ଭିତରେ ଭାଷା ପ୍ରତି ଫକୀରମୋହନଙ୍କ ମମତା ଯେ ଯଥେଷ୍ଟ ଥିଲା, ସେକଥା ଯେ କେହି ସ୍ୱୀକାର କରିବ । ସମସାମୟିକ ପରିସ୍ଥିତିର ଆଲୋଚନାରେ ଫକୀରମୋହନଙ୍କର ଦୃଷ୍ଟିକୋଣ ଯେତିକି ଗଭୀର, ସେତିକି ଅନୁଶୀଳନ-ପ୍ରୟାସୀ ।

## (୧୪) ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କ ସ୍ଥାନ ।

ଆଧୁନିକ ଓଡ଼ିଆ ସାହିତ୍ୟରେ କବିବର ରାଧାନାଥ ଏକ ସୁଦୃଢ଼ ପଦକ୍ଷେପରେ ଓଡ଼ିଆ ସାହିତ୍ୟକୁ ଗତିଶୀଳ କରିବାର ପ୍ରୟାସ କରିଥିଲେ । ଗଙ୍ଗାଧର, ନନ୍ଦକିଶୋର, ପଦ୍ମଚରଣ ପ୍ରଭୃତିଙ୍କର ଦାନ ଏ ଯୁଗର ସାହିତ୍ୟକୁ ସମୃଦ୍ଧ କରିଅଛି । ଦୀର୍ଘକାଳ ଧରି ଓଡ଼ିଆ ସାହିତ୍ୟର ଇତିହାସରେ କାବ୍ୟ କବିତାର ପ୍ରସିଦ୍ଧି ଯେଉଁ ମାର୍ଗରେ ଅନୁସୃତ ହେଉଥିଲା, ସେ ମାର୍ଗରୁ ଓଡ଼ିଆ ସାହିତ୍ୟକୁ ଭିନ୍ନ ମାର୍ଗରେ ଅଗ୍ରସର କରାଇବାର ପ୍ରଚେଷ୍ଟା ଫକୀରମୋହନଙ୍କଠାରେ ହିଁ ଦେଖାଦେଲା । କାବ୍ୟ କବିତା ଏବଂ ପୁରାଣାଦିର ଅନୁବାଦ ଆଧୁନିକ ଯୁଗର ଅନ୍ୟମାନଙ୍କ କୃତିରେ ଫକୀରମୋହନଙ୍କ ଲେଖାମାରେ ଆତ୍ମପ୍ରକାଶ କରିଛି । ମାତ୍ର ଫକୀରମୋହନଙ୍କ ବୈଶିଷ୍ଟ୍ୟ ଏଥିରେ ନିହିତ ନାହିଁ । ଓଡ଼ିଆ ଗଳ୍ପ ଏବଂ ଉପନ୍ୟାସର ଜନ୍ମଦାତା ରୂପେ ସେ ପୂଜ୍ୟ । ଅଧୁନାତନ କାଳରେ ଗଦ୍ୟ-ପ୍ରଧାନ ସାହିତ୍ୟ ଯୁଗରେ ଫକୀରମୋହନଙ୍କ ପ୍ରାଧାନ୍ୟ ସ୍ୱୀକାର୍ଯ୍ୟ ।

ଉମେଶ ଚନ୍ଦ୍ର ସରକାର ଫକୀରମୋହନଙ୍କ ପୂର୍ବରୁ ପଦ୍ମମାଳୀ ଉପନ୍ୟାସ ଲେଖିଥିଲେ ହେଁ ବାସ୍ତବ ପକ୍ଷରେ ଦେଖିବାକୁ ଗଲେ ଓଡ଼ିଆ ଉପନ୍ୟାସକୁ ସେ ପ୍ରାଣ ପ୍ରାଚୁର୍ଯ୍ୟରେ ଭୂଷିତ କରିନାହାନ୍ତି । ଫକୀରମୋହନ କେବଳ ଓଡ଼ିଆ ଉପନ୍ୟାସ ଓ

ଗଳ୍ପ ସାହିତ୍ୟର ସ୍ରଷ୍ଟା ନୁହନ୍ତି, ପ୍ରତିଷ୍ଠାତା ମଧ୍ୟ । ଫକୀରମୋହନଙ୍କ ପରେ ତାଙ୍କର ଅମର ଲେଖନୀ ଯାହା ସୃଷ୍ଟି କରିଥିଲା, ସେ ସବୁ ଆଜି ପର୍ଯ୍ୟନ୍ତ ଅନତିକ୍ରମ୍ୟ ହୋଇ ରହିଅଛି । ଅନେକ ଲେଖକ ଲେଖିକା ଫକୀରମୋହନଙ୍କୁ ଅନୁସରଣ ଏବଂ ଅନୁକରଣ କରି ମଧ୍ୟ ତାଙ୍କ ସୃଷ୍ଟି ସମ୍ପଦର ପ୍ରାଣପ୍ରାଚୂର୍ଯ୍ୟକୁ ଆଣି ନିଜ ସୃଷ୍ଟିସମ୍ପଦ ଭିତରେ ସ୍ଥାପନ କରିବା ନିମିତ୍ତ ସମର୍ଥ ହୋଇପାରିନାହାନ୍ତି । ଉପନ୍ୟାସ ଓ ଗଳ୍ପରେ ତାଙ୍କର ସଂସ୍କାରକଳ୍ପନା ଚରିତ୍ର ଚିତ୍ରଣ, ଚରିତ୍ର ସମାବେଶ, ବର୍ଣ୍ଣନା ଶୈଳୀ, ହାସ୍ୟରସ, ଭାଷାର ସୌଷ୍ଠବତା ପ୍ରଭୃତିରେ ସେ ଓଡ଼ିଆ ସାହିତ୍ୟରେ ଏକ ଅପୂର୍ବ ଦିଗ୍‌ଦର୍ଶନର ସନ୍ଧାନ ଦେଇଯାଇଅଛନ୍ତି ।

ଆଧୁନିକ ଯୁଗର କେତେକ ସମାଲୋଚକ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗକୁ ରାଧାନାଥଙ୍କ ନାମରେ ନାମିତ ନ କରି ଫକୀରମୋହନଙ୍କ ନାମରେ ନାମିତ କରିବାକୁ ଉଚିତ ମନେ କରନ୍ତି । ଏହାର କାରଣ ହେଉଛି ଓଡ଼ିଆ ସାହିତ୍ୟକୁ ଗୋଟିଏ ନୂତନ ମାର୍ଗରେ ଅଗ୍ରସର ହେବା ନିମିତ୍ତ ସେ ଦେଇଛନ୍ତି ଏକ ବଳିଷ୍ଠ ଦିଗଦର୍ଶନ । ଫକୀରମୋହନଙ୍କ ପ୍ରଭାବ ଅଧୁନାତନ ସାହିତ୍ୟରେ ଯଦି ସ୍ୱୀକାର କରାଯାଏ, ତେବେ ତାଙ୍କୁ ଯୁଗପ୍ରବର୍ତ୍ତକ କହିବାରେ ଆପତ୍ତି କିଛି ନ ଥାଇ ପାରେ । ମାତ୍ର ଗଦ୍ୟର ପ୍ରାଧାନ୍ୟ ଏ ଯୁଗରେ ଯେତେ ବେଶୀହେଲେ ହେଁ, ପଦ୍ୟର ପ୍ରାଧାନ୍ୟ କିଛି କମ୍ ନୁହେଁ । ଫକୀରମୋହନ ଯୁଗସ୍ରଷ୍ଟା ହୁଅନ୍ତୁ ବା ନ ହୁଅନ୍ତୁ, ସେଥିରେ ଆମର କିଛି କହିବାର ନାହିଁ, ମାତ୍ର ଅଧୁନାତନ ଓଡ଼ିଆ ସାହିତ୍ୟର ସେ ଯେ ପ୍ରାଣ ପ୍ରତିଷ୍ଠାତା ଏଥିରେ ସନ୍ଦେହ କରିବାର କିଛି ନାହିଁ ।

●

# ଉତ୍କଳମଣି ଗୋପବନ୍ଧୁ

## ( ୧ ) ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଚିନ୍ତାଧାରା—

କବିବର ରାଧାନାଥ ତାଙ୍କ ଜୀବଦ୍ଦଶାରେ ବହୁ କଟୁଉକ୍ତି ସମାଲୋଚନାର ସମ୍ମୁଖୀନ ହୋଇଥିଲେ । ତାଙ୍କର କାବ୍ୟଗୁଡ଼ିକର କଥାବସ୍ତୁରେ ବିମଳ ପ୍ରେମର ଚିତ୍ରର ଅଭାବ ଏହିି ସମାଲୋଚନାର ମୂଳକାରଣ । ପଣ୍ଡିତ ନୀଳକଣ୍ଠ, ବିଶ୍ୱନାଥ କର ପ୍ରମୁଖ ବହୁବ୍ୟକ୍ତି ରାଧାନାଥଙ୍କୁ ଏଥିପାଇଁ ସମାଲୋଚନା କରିଛନ୍ତି । ରାଧାନାଥଙ୍କର ଲେଖାବଳୀ ଉପରେ ମତବ୍ୟକ୍ତ କରିବାକୁ ଯାଇ ବିଶ୍ୱନାଥ କର ଲେଖିଥିଲେ, "ଦୁର୍ଭାଗ୍ୟର ବିଷୟ, ଏପର୍ଯ୍ୟନ୍ତ ଆମ୍ଭେମାନେ ତାଙ୍କଠାରୁ ଗୋଟିଏ ଉନ୍ନତ ପ୍ରେମଚିତ୍ର ପାଇ ପାରିନାହୁଁ । ବରଂ ବ୍ୟଥିତ ଚିତ୍ତରେ କହିବାକୁ ପଡ଼ୁଛି ଯେ ସେ ତାଙ୍କର ପ୍ରାୟ ସମସ୍ତ ନାୟକ-ନାୟିକାଙ୍କ ଚିତ୍ତକୁ ଶାରୀରିକ ସୌନ୍ଦର୍ଯ୍ୟ ଓ ଇନ୍ଦ୍ରିୟ ସୁଖରେ ଅଭିନିବିଷ୍ଟ କରିପକାଇଛନ୍ତି । ସ୍ଥଳବିଶେଷରେ ସେ ସୁରୁଚି ଏମନ୍ତ କି ସୁନୀତିର ସୀମା ଲଙ୍ଘନ କରିଯାଇଅଛନ୍ତି ।" ବ୍ରାହ୍ମଧର୍ମର ପରିବେଷ୍ଟନୀରେ ପରିପୁଷ୍ଟ ବିଶ୍ୱନାଥ କରଙ୍କ ଦୃଷ୍ଟିରେ ରାଧାନାଥଙ୍କର

କାବ୍ୟଗୁଡ଼ିକର କଥାବସ୍ତୁ କେବେହେଲେ ଶୋଭନୀୟ ବିବେଚିତ ହେବାର କଥା ନୁହେଁ । ଲେଖାବଳୀର ପଦଗୁଡ଼ିକ ଉପରେ ମନ୍ତବ୍ୟ ଦେବାକୁ ଯାଇ ସେ ଏପରି ମତ ପ୍ରକାଶ କରିଅଛନ୍ତି । ତେଣୁ ପାର୍ବତୀ କାବ୍ୟର କଥାବସ୍ତୁ ଉପରେ ସେ ଯେ କପରି ମନ୍ତବ୍ୟ ପ୍ରକାଶ କରିଥାଆନ୍ତେ ତାହା ଭାବିବାର କଥା ।

ରାଧାନାଥଙ୍କର ଆଧୁନିକତା ବା ଆଦର୍ଶକୁ ଅନୁସରଣ କରିଥିବା ବହୁବ୍ୟକ୍ତି ମଧ୍ୟ ତାଙ୍କ ବିରୁଦ୍ଧରେ ଏଥିପାଇଁ ମତପ୍ରଦାନ କରିଅଛନ୍ତି । ପଲ୍ଲୀକବି ନନ୍ଦକିଶୋର ବଳ ମଧ୍ୟ ରାଧାନାଥଙ୍କ ସାହିତ୍ୟ-ସାଧନା ବିରୁଦ୍ଧରେ ମତ ପ୍ରଦାନ କରିଛନ୍ତି । ସେ ଭକ୍ତକବି ମଧୁସୂଦନଙ୍କର ସାହିତ୍ୟ-ସାଧନାର ପ୍ରଶଂସା କରିବାକୁ ଯାଇ ରାଧାନାଥଙ୍କର ନିନ୍ଦାଗାନ କରିଛନ୍ତି । ପଣ୍ଡିତ ନୀଳକଣ୍ଠ ମଧ୍ୟ ତାଙ୍କର କୋଣାର୍କେ କାବ୍ୟରେ ରାଧାନାଥଙ୍କୁ ଆକ୍ଷେପ କରିଅଛନ୍ତି । କବିବର ରାଧାନାଥ ଏ ଦେଶର ପରମ୍ପରାକୁ ନଷ୍ଟକରିଦେବା ଫଳରେ ନୀଳକଣ୍ଠ ତାଙ୍କ ପ୍ରତି ନିତାନ୍ତ ନିର୍ମମ ହୋଇ ପଡ଼ିଛନ୍ତି ।

କବିବର ରାଧାନାଥଙ୍କ ବିରୁଦ୍ଧରେ ସେ ସମୟର ସମାଲୋଚକମାନେ ଏପରି ମତ ପ୍ରଦାନ କରିବା ମୂଳରେ ଥିଲି ସେ ସମୟର ଜାତୀୟ-ଜାଗରଣର ସଙ୍କେତ । ରାଧାନାଥଙ୍କ ସମୟରେ ବା ପରେ ପରେ ଏ ଦେଶରେ ଜାତୀୟ-ଜାଗରଣର ଏକ ଅପୂର୍ବ ଉନ୍ମାଦନା ଖେଳିଯାଇଥିଲି । ପଣ୍ଡିତ ଗୋପବନ୍ଧୁ ଯେତେବେଳେ ପୁରୀ ଜିଲ୍ଲା ସ୍କୁଲରେ ଅଷ୍ଟମ ଶ୍ରେଣୀର ଛାତ୍ର ଥିଲେ, ସେତେବେଳେ ସେ ରାଧାନାଥଙ୍କୁ ଆକ୍ଷେପ କରି ଇନ୍ଦ୍ରଧନୁରେ ଏକ କବିତା ଲେଖିଥିଲେ । ସେହି କବିତା ଲେଖିବା ଫଳରେ ତାଙ୍କୁ ଦଣ୍ଡିତ ହେବାକୁ ମଧ୍ୟ ପଡିଥିଲି । ସେହି ଗୋପବନ୍ଧୁ ଯେତେ-

ବେଳେ ବାସ୍ତବ କର୍ମକ୍ଷେତ୍ରକୁ ପ୍ରବେଶ କଲେ, ସେତେବେଳେ ସେ ନିର୍ଭୀକଭାବରେ ସେ ରାଧାନାଥ-ସାହିତ୍ୟରେ ଦେଖାଦେଇଥିବା ବିଜାତୀୟ କଥାବସ୍ତୁଗୁଡ଼ିକ ବିଷୟରେ ବିତୃଷ୍ଣ ହୋଇ ଉଠିଥିବେ, ଏଥିରେ ସନ୍ଦେହର ଅବକାଶ ନାହିଁ । ରାଧାନାଥଙ୍କର କାବ୍ୟକବିତାକୁ ନିନ୍ଦାକରି ସେ ଜାତୀୟତା-ଭାବମୂଳକ କବିତା ରଚନା କରିବାରେ ମନ ଦେଇଥିଲେ । ଦେଶ-ପ୍ରେମିକତାର ଉଦାହରଣ ପ୍ରଦର୍ଶନ କରିବାକୁ ଯାଇ ସେ ଆମଦେଶର ପ୍ରଚଳିତ କିମ୍ବଦନ୍ତୀକୁ ଅନୁସରଣ କରି ଆଦର୍ଶମୂଳକ କଥାବସ୍ତୁର ରୂପାୟନ କଲେ ।

କବିବର ରାଧାନାଥଙ୍କର ଚନ୍ଦ୍ରଭାଗା କାବ୍ୟକୁ ଏଠାରେ ଆଲୋଚନାରେ ଗ୍ରହଣ କରାଯାଉ । ସୂର୍ଯ୍ୟଦେବଙ୍କଠାରୁ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ କନ୍ଦର୍ପ ତାଙ୍କୁ ଚନ୍ଦ୍ରଭାଗାଙ୍କ ଉଦ୍ଦେଶ୍ୟରେ ନିୟୋଜିତ କରିଛନ୍ତି । ସୂର୍ଯ୍ୟଦେବ ଚନ୍ଦ୍ରଭାଗାଙ୍କୁ କନ୍ଦୁକ କ୍ରୀଡ଼ା କରିବା ଅବସ୍ଥାରେ ଦେଖି ତାଙ୍କର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇଛନ୍ତି । କନ୍ଦର୍ପର ପଞ୍ଚଶର ପ୍ରୟୋଗ ଫଳରେ ସୂର୍ଯ୍ୟଦେବ ଚନ୍ଦ୍ରଭାଗାଙ୍କ ପ୍ରତି ଆକୃଷ୍ଟ ହେବା ସଙ୍ଗେ ସଙ୍ଗେ କନ୍ଦର୍ପଙ୍କର ଓଲଟା ଶର ପ୍ରୟୋଗ ଫଳରେ ଚନ୍ଦ୍ରଭାଗା ସୂର୍ଯ୍ୟଙ୍କ ପ୍ରତି ବିତୃଷ୍ଣାଭାବ ପ୍ରଦର୍ଶନ କରିଛନ୍ତି । ସୂର୍ଯ୍ୟଦେବ ଚନ୍ଦ୍ରଭାଗାଙ୍କ ଅନୁଧାବନ କରି ବହୁ କାକୁତି ମିନତି ପ୍ରକାଶ କଲେ । ମାତ୍ର ଚନ୍ଦ୍ରଭାଗା ଭୟରେ ପଳାୟନ କରି ସମୁଦ୍ରତୀରରେ ପହଞ୍ଚିଲେ ଓ ସମୁଦ୍ରର ଏକ ତରଙ୍ଗ ଆସି ତାଙ୍କୁ ଭସାଇ ନେଲା । ସୁମନ୍ତ୍ୟୁଙ୍କ ଅଭିଶାପ ଫଳରେ ସୂର୍ଯ୍ୟଦେବଙ୍କର ଅଧିଷ୍ଠାନ ସ୍ଥଳ କୋଣାର୍କ ମନ୍ଦିର ଭାଙ୍ଗିପଡ଼ିଲା ଓ ସେଠାରୁ ସୂର୍ଯ୍ୟପୂଜା ବିଧାନ ଉଠିଗଲା ।

ରାଧାନାଥଙ୍କର ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁ ଏ ଦେଶର କୌଣସି କିମ୍ବଦନ୍ତୀ ବା ଇତିହାସରୁ ଗ୍ରହଣ କରାଯାଇ ନାହିଁ ।

ଏହା ଗ୍ରୀକ୍ ସାହିତ୍ୟରୁ ଆନୀତ । ଓଡ଼ିଆର ଶିଳ୍ପ-ନୈପୁଣ୍ୟର ପରାକାଷ୍ଠା ପ୍ରଦର୍ଶନ କରିଥିବା ପ୍ରସିଦ୍ଧ କୋଣାର୍କ ମନ୍ଦିର ଧୂଳିସାତ ହେବାର କାରଣ ପ୍ରତି ସେ ସମୟର ଓଡ଼ିଆର ଜାତୀୟତା ଆପତ୍ତି କରିଛି । ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁରେ ଶିକ୍ଷଣୀୟ ବିଷୟ କିଛି ନାହିଁ । ତେଣୁ ଏହି କଥାବସ୍ତୁ ଆମର ଜାତୀୟ ଜୀବନରେ ବିଭ୍ରାନ୍ତିକର ପରିସ୍ଥିତି ସୃଷ୍ଟି କରିପାରେ ବୋଲି ଆଶଙ୍କା କରି ଗୋପବନ୍ଧୁ ଏହି କଥାବସ୍ତୁରୁ ପାଠକର ଦୃଷ୍ଟିକୁ ଫେରାଇ ଆଣିବାର ଚେଷ୍ଟା କରି ଧର୍ମପଦ ରଚନା କରିଛନ୍ତି । ଧର୍ମପଦର କଥାବସ୍ତୁ ଆମର ଦେଶର ଏକ କିମ୍ବଦନ୍ତୀର ଅନୁସରଣରେ ଗୃହୀତ । ବାରଶହ ଶିଳ୍ପୀ କୋଣାର୍କ ମନ୍ଦିର ନିର୍ମାଣ କଲେ । ଶିଳ୍ପ-ଶୁଶ୍ରୁଷାରେ ଏହି ମନ୍ଦିର ଜଗତବିଖ୍ୟାତ ହେଲା । ମାତ୍ର ମନ୍ଦିରର ମୁଣ୍ଡି ମାରିବାକୁ ଶିଳ୍ପୀମାନେ ସମର୍ଥ ହେଲେ ନାହିଁ । ବିଶୁ କାରିଗରର ପୁଅ ବାରବର୍ଷର ପିଲା ଧରମା ଏହି ମନ୍ଦିରର ମୁଣ୍ଡି ମାରି ଜାତିର ଟେକ ରଖିଲା । ଜାତିର ସ୍ୱାର୍ଥ ପାଇଁ, ବାରଶହ ଶିଳ୍ପୀଙ୍କର ପ୍ରାଣରକ୍ଷାପାଇଁ ଧରମା ହସି ହସି ପ୍ରାଣ ବିସର୍ଜନ କଲା । ଧର୍ମପଦଠାରେ ଅଲୌକିକ ଶକ୍ତିର ସଂକେତ କବି ପ୍ରଦାନ କରିଛନ୍ତି । ଜାତି ପ୍ରାଣରେ ଜାତୀୟତାର ସ୍ପନ୍ଦନ ଖେଳାଇ ଦେବା ପାଇଁ, ଜାତିକୁ ବିଭ୍ରାନ୍ତିକର ପରିସ୍ଥିତିରୁ ରକ୍ଷାକରିବା ପାଇଁ କେବଳ ଗୋପବନ୍ଧୁ ନୁହନ୍ତି, ସତ୍ୟବାଦୀ ଗୋଷ୍ଠୀର ପ୍ରତ୍ୟେକ ସାଧକ ତାଙ୍କର ସାହିତ୍ୟ ସାଧନା କରିଛନ୍ତି ।

ସତ୍ୟବାଦୀ ଗୋଷ୍ଠୀର ଅନ୍ୟତମ ସାଧକ ପଣ୍ଡିତ ନୀଳକଣ୍ଠ ତାଙ୍କର ସାହିତ୍ୟ ସାଧନାର ଆଦର୍ଶ ଠିକ୍ ଏହିପରି ଭାବରେ ଗ୍ରହଣ କରିଅଛନ୍ତି । ତାଙ୍କର ଖାରବେଳରେ ସେଉଁ ଅପୂର୍ବ ପ୍ରେମର

ଚନ୍ଦ ପରିବେଷିତ ତାହା ଏ ଜାତିର ପରମ୍ପରାର ପରିପନ୍ଥୀ । ତାଙ୍କର କୋଣାର୍କେ କାବ୍ୟର ପ୍ରଥମଖଣ୍ଡ, "ରାମଚଣ୍ଡୀଠାରେ ରାତି"ରେ ସେ ରାଧାନାଥଙ୍କୁ ବହୁଭାବରେ ନିନ୍ଦା କରି ଅଛନ୍ତି । ସତ୍ୟବାଦୀ ବନ-ବିଦ୍ୟାଳୟରେ ଶିକ୍ଷକ ଥିବା ସମୟରେ ଥରେ ସେ ଛାତ୍ରମାନଙ୍କୁ ସଙ୍ଗରେ ନେଇ କୋଣାର୍କ ପରିଦର୍ଶନରେ ଯାଇଥିଲେ । ସେଦିନ ଥିଲା କୁମାର ପୂର୍ଣ୍ଣିମା । ଛାତ୍ରମାନେ ଯେତେବେଳେ ଯାଇ କୋଣାର୍କରେ ପହୁଞ୍ଚିଲେ ସେତେବେଳେ ଭୀଷଣ ବର୍ଷା ଓ ଝଡ଼ ହେଲା । କୋଣାର୍କ ମନ୍ଦିର ନିକଟରେ ଆଶ୍ରୟ ନେବା ପାଇଁ କୌଣସି ସ୍ଥାନ ନ ଥିବାରୁ ପଣ୍ଡିତ ନୀଳକଣ୍ଠ ଛାତ୍ରମାନଙ୍କୁ ନେଇ ରାମଚଣ୍ଡୀ ମନ୍ଦିରର ମୁଖଶାଳାରେ ରାତିଯାପନ କରିବା ଉଦ୍ଦେଶ୍ୟରେ ଆଶ୍ରୟ ନେଲେ । ପିଲାମାନେ କ୍ଳାନ୍ତ ହୋଇଥିବାରୁ ସେଠାରେ ଶୋଇପଡ଼ିଲେ ମାତ୍ର ନୀଳକଣ୍ଠଙ୍କ ଆଖିକୁ ନିଦ ଆସିଲା ନାହିଁ । ଅତୀତ ଉତ୍କଳର ଗୌରବମୟ ଗାଥା ତାଙ୍କର ମନେ ପଡ଼ିଲା । ସେହିଠାରେ ସେ ଅତୀତ ଉତ୍କଳର ଗୌରବଗାନ କରିବା ସଙ୍ଗେ ସଙ୍ଗେ ରାଧାନାଥ-ସାହିତ୍ୟର ନିନ୍ଦାଗାନ କରି ଅଛନ୍ତି । ରାଧାନାଥ ତାଙ୍କର କାବ୍ୟଗୁଡ଼ିକରେ ଉତ୍କଳର ପରମ୍ପରାକୁ ନଷ୍ଟ କରିବା ସଙ୍ଗେ ସଙ୍ଗେ ଜାତୀୟଜୀବନର ସଂହତି ପ୍ରତି ମଧ୍ୟ ଅନ୍ୟାୟ ଆଚରଣ କରିଅଛନ୍ତି । ତେଣୁ ରାଧାନାଥଙ୍କ ଆଡ଼ୁ ମୁହଁ ଫେରାଇ ଆଣିବାକୁ ସେ ପିଲାମାନଙ୍କୁ ଉଦ୍‌ବୋଧନ ଦେଇ ଅଛନ୍ତି ।

କୋଣାର୍କେ କାବ୍ୟର ଦ୍ୱିତୀୟ ଭାଗରେ ମାୟାଦେବୀ କାବ୍ୟ ରଚିତ । ମାୟାଦେବୀର କଥାବସ୍ତୁ କବି ଜଣେ ଭାଟମୁହଁରୁ ଶୁଣିଥିବା ଗୀତିକାରୁ ଗ୍ରହଣ କରିଅଛନ୍ତି । ଏଥିରେ କବି ଉତ୍କଳ

ଓ କାଶ୍ମୀରର ପ୍ରାକୃତିକ ଶୋଭା ବର୍ଣ୍ଣନାରେ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । ବୀର ନରସିଂହଙ୍କର ପ୍ରଣୟ ଚରିତ ଉଚ୍ଚକୋଟୀର— ଏଥିରେ ଉଚ୍ଛୃଙ୍ଖଳ ଶୃଙ୍ଗାର ରସ ନାହିଁ, ଅଛି କେବଳ ପବିତ୍ର ପ୍ରଣୟର ଚିତ୍ର । ଉତ୍କଳୀୟ ନାରୀ ହିସାବରେ ନୀଳକଣ୍ଠ ମାୟା-ଦେବୀଙ୍କୁ ଅତି ଉଚ୍ଚଆସନ ପ୍ରଦାନ କରିଛନ୍ତି । ନାରୀ ଚରିତ୍ରର ମହନୀୟତା ତାଙ୍କଠାରେ ଲକ୍ଷ୍ୟ କରିବାର କଥା । ମାୟାଦେବୀଙ୍କର ତ୍ୟାଗର ଚିତ୍ର ଉଜ୍ଜ୍ୱଳ ଆଦର୍ଶର ଚିତ୍ର । କୋଣାର୍କେ କାବ୍ୟରେ ଓଡ଼ିଆ ଜାତିର ଗୌରବ ପ୍ରତିଷ୍ଠା ପାଇଁ ନୀଳକଣ୍ଠ ଯେଉଁ ଉଦ୍ୟମ ଆରମ୍ଭ କରିଥିଲେ ତାହାର ଚରମ ପରିଣତିରେ "ଓଡ଼ିଆ ସାହିତ୍ୟର କ୍ରମ ପରିଣାମ"ର ଜନ୍ମ । ତେଣୁ ଉଗ୍ର ଜାତୀୟବାଦୀ ହିସାବରେ ପଣ୍ଡିତ ନୀଳକଣ୍ଠଙ୍କର ଦାନ ସତ୍ୟବାଦୀ ସାହିତ୍ୟରେ ସର୍ବଥା ସ୍ୱୀକାର୍ଯ୍ୟ ।

ପଣ୍ଡିତ ଗୋଦାବରୀଶ ଏହି ସତ୍ୟବାଦୀର ସାଧକମାନଙ୍କ ମଧ୍ୟରେ ଏକ ବଶିଷ୍ଟ ସମ୍ମାନର ଯୋଗ୍ୟ । ଓଡ଼ିଆ ଗୀତି-କବିତାର ସ୍ରଷ୍ଟାରୂପେ ତାଙ୍କର ବୈଶିଷ୍ଟ୍ୟ ସ୍ୱୀକାର କରିବାର କଥା । ଅତୀତର ଗୌରବମୟ କିମ୍ବଦନ୍ତୀକୁ ସେ ତାଙ୍କର କବିତାର କଥାବସ୍ତୁ ରୂପେ ଅନେକତ୍ର ଗ୍ରହଣ କରିଛନ୍ତି ସତ, ମାତ୍ର ବହୁସ୍ଥଳରେ ତାଙ୍କର ସାହିତ୍ୟ-ସୃଷ୍ଟି ଅନୁଭୂତି ପ୍ରସୂତ । ଜୀବନର ଅନେକ ଛୋଟବଡ଼ ଘଟଣାକୁ ନେଇ ତାଙ୍କର କବିପ୍ରାଣ ଯେତେବେଳେ ଭାବବିହ୍ୱଳ ହୋଇଉଠିଛି, ସେତେବେଳେ ସେ ତାକୁ କବିତାରେ ପ୍ରକାଶ କରିଛନ୍ତି । ଅନୁଭୂତି ସୁଖର ହେଉ ବା ଦୁଃଖର ହେଉ ତାକୁ ସେ କବିଭାବରେ ଗ୍ରହଣ କରିଅଛନ୍ତି । ତାଙ୍କର ବିଖ୍ୟାତ କାଳିଜାଈ ଗୀତିକବିତା ଉତ୍କଳର ଯେ କୌଣସି ପାଠକର ଅନ୍ତରକୁ

ସ୍ପର୍ଶ କରେ । ଏହି କବିତା ଏକ କମ୍ବଦନ୍ତୀକୁ ଆଶ୍ରୟ କରି ଲେଖାଯାଇଅଛି ସତ, ମାତ୍ର କବିତାର ପ୍ରାଣ ସାର୍ବଜନୀନ ଚେତନାକୁ ସ୍ପର୍ଶ କରିଥାଏ । କବି ଥରେ କାଳିଜାଈରୁ ନୌକାରେ ଫେରିବା ସମୟରେ ଗୋଟିଏ ଛେଳି ଛୁଆକୁ ଦେଖିଲେ । ଲୋକମାନେ ନାବରେ ପଳାଇ ଆସିବାବେଳେ ଛେଳି ଛୁଆଟି ବିକଳଭାବରେ ସେମାନଙ୍କୁ ଅନାଇଁ ରହିଲା । କବି ଛେଳି ଛୁଆଟିକୁ ନେଇ ଆସିବାପାଇଁ କହିବାରୁ ନାବିକ ମନାକଲା । ସେ ଛେଳିଛୁଆଟି କାଳିଜାଈ ଠାକୁରାଣୀଙ୍କର । ଲୋକମାନେ କାଳିଜାଈ ଠାକୁରାଣୀଙ୍କୁ ଯେଉଁ ବୋଦା ଯାଚନ୍ତି ତାକୁ ନେଇ କାଳିଯାଈ ପାହାଡ଼ରେ ଛାଡ଼ିଦେଇ ଆସନ୍ତି । ଛେଳି ବୋଦାମାନେ ସେହି ପାହାଡ଼ରେ ରହନ୍ତି । ସେଠାରୁ ସେମାନଙ୍କୁ ନେଇ ଆସିଲେ ନାବ ବୁଡ଼ିଯିବ ବୋଲି ଲୋକମାନେ ବିଶ୍ୱାସ କରନ୍ତି । ନାବ ଚାଲିଆସିବା ନବେଳେ କବି ଛେଳି ଛୁଆଟିର ବିକଳ ଅବସ୍ଥା ଦେଖି ଦୁଃଖିତ ହୋଇଥିଲେ । ସେହି ଛେଳିଛୁଆକୁ କେନ୍ଦ୍ରକରି କବି ଅନାଥଶିଶୁ ନାମକ କବିତା ଲେଖିଥିଲେ । ଜୀବନର ବହୁ ଶ୍ରେଷ୍ଠବଡ଼ ଘଟଣାର ଅନୁଭୂତିକୁ କେନ୍ଦ୍ରକରି କବି କବିତା ରଚନା କରିଛନ୍ତି । ଜାତୀୟତା ଭାବମୂଳକ କଥାବସ୍ତୁ ଗ୍ରହଣକରି ଗୋଦାବରୀଶ, ମୁକୁନ୍ଦଦେବ ଓ ପୁରୁଷୋତ୍ତମ ଦେବ ନାଟକ ରଚନା କରିଛନ୍ତି । କେତେକ ପାଶ୍ଚାତ୍ୟ ଉପନ୍ୟାସ ଅବଲମ୍ବନରେ ସେ ମଧ୍ୟ ଉପନ୍ୟାସ ରଚନା କରିଛନ୍ତି । ତାଙ୍କର ରଚିତ କ୍ଷୁଦ୍ରଗଳ୍ପଗୁଡ଼ିକ ସତ୍ୟମୂଳକ ଅନୁଭୂତି ଉପରେ ଲେଖାଯାଇଅଛି । ସେଗୁଡ଼ିକରେ ତାଙ୍କର ସଂସ୍କାରମୁଖୀ ଦୃଷ୍ଟିକୋଣ ଲକ୍ଷ୍ୟ କରିବାର କଥା । କବି ଗୋଦାବରୀଶଙ୍କର ଆତ୍ମଜୀବନ ଚରିତ "ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ" ନାମରେ ପ୍ରକାଶିତ ହୋଇଅଛି । ଏଥିରେ

ତତ୍କାଳୀନ ଓଡ଼ିଶାର ଐତିହାସିକ ତଥ୍ୟ ସମ୍ବଳିତ ତାଙ୍କର ନିର୍ଭୀକ ମତଗୁଡ଼ିକରୁ ତାଙ୍କର ଜାତୀୟ ପ୍ରେମର ଉଦାହରଣ ମିଳିଥାଏ । ତେଣୁ ସତ୍ୟବାଦୀର ସାଧକମାନଙ୍କ ମଧ୍ୟରେ କବି ଗୋଦାବରୀଶଙ୍କର ସାହିତ୍ୟ-ସାଧନାର ଲକ୍ଷ୍ୟ ଜାତୀୟତା ଭାବ ସମ୍ପ୍ରସାରଣ ।

ପଣ୍ଡିତ କୃପାସିନ୍ଧୁ ସତ୍ୟବାଦୀର ସାଧକମାନଙ୍କ ମଧ୍ୟରେ ଐତିହାସିକ ରୂପେ ଖ୍ୟାତିଲାଭ କରିଛନ୍ତି । ତାଙ୍କର ଓଡ଼ିଶା ଇତିହାସ ଏକ ସ୍ମରଣୀୟ କୃତି । ତାଙ୍କ ପୂର୍ବରୁ ଯେଉଁମାନେ ଓଡ଼ିଶା ଇତିହାସ ଲେଖିଥିଲେ ସେମାନଙ୍କର ଭ୍ରମାତ୍ମକ ମତଗୁଡ଼ିକୁ ଖଣ୍ଡନ କରି ସେ ଓଡ଼ିଶାର ପ୍ରାମାଣିକ ଇତିହାସ ଲେଖିଅଛନ୍ତି । ତାଙ୍କର ଦୃଷ୍ଟିକୋଣର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ ହୋଇଅଛି । ତାଙ୍କର 'ବାରବାଟୀ' ଓ 'କୋଣାର୍କ' ଗ୍ରନ୍ଥ ଦୁଇଟି ତାଙ୍କର ବୈଜ୍ଞାନିକ ଗବେଷଣା ପଦ୍ଧତିର ପରିଚୟ ପ୍ରଦାନ କରେ । ତାଙ୍କର ଯେତେଗୁଡ଼ିଏ ପ୍ରବନ୍ଧ ପ୍ରକାଶ ପାଇଅଛି ସେଗୁଡ଼ିକରେ ମଧ୍ୟ ତାଙ୍କର ଉଚ୍ଚାଙ୍ଗ ସାହିତ୍ୟସୃଷ୍ଟି ତଥା ଗବେଷଣାତ୍ମକ ମନୋବୃତ୍ତିର ପରିଚୟ ମିଳିଅଛି ।

ଏମାନଙ୍କ ବ୍ୟତୀତ ସତ୍ୟବାଦୀର ସାଧକମାନଙ୍କ ମଧ୍ୟରେ ଆଚାର୍ଯ୍ୟ ହରିହର, ବାସୁଦେବ ଓ ପଣ୍ଡିତ ଲିଙ୍ଗରାଜଙ୍କର ମଧ୍ୟ ଜାତୀୟତା ଅଭିବୃଦ୍ଧି ନିମିତ୍ତ ଯଥେଷ୍ଟ ଦାନ ରହିଛି । ସତ୍ୟବାଦୀର ସାଧକମାନଙ୍କର ସାଧନାର ମୂଳ ମନ୍ତ୍ର ହେଲା ଜାତୀୟତା-ଭାବ । ଏହି ଭାବରେ ଅଗଣିତ ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରିବାପାଇଁ ସତ୍ୟବାଦୀର ସ୍ରଷ୍ଟାଗଣ ଲେଖନୀ ଚାଳନା କରିବା ସମୟରେ ଅତୀତକୁ ଅସ୍ୱୀକାର କରିବା ଉଦ୍ଦେଶ୍ୟରେ ରାଧାନାଥଙ୍କ ସାହିତ୍ୟକୁ ଉନ୍ନତ ସାହିତ୍ୟ ଭାବରେ ସ୍ୱୀକାର କରିନାହାନ୍ତି । ରାଧାନାଥଙ୍କ

ସାହିତ୍ୟ-ସୃଷ୍ଟି ମଧ୍ୟରେ ସେମାନେ ବହୁଦୋଷ ଧରିବାରେ ସମର୍ଥ ହୋଇ ଅଛନ୍ତି । କବିବର ରାଧାନାଥଙ୍କର ଜାତୀୟତା ଏ ଯୁଗରେ ଗୃହୀତ ହୋଇ ପାରିଲା ନାହିଁ । ତେଣୁ ଏ ଯୁଗର ଜାତୀୟତାର ସ୍ୱାତନ୍ତ୍ର୍ୟ ସମୟୋପଯୋଗିତା ଦୃଷ୍ଟିରେ ଭିନ୍ନ ରୂପ ଧାରଣ କରିଅଛି ।

ସତ୍ୟବାଦୀ-ଚିନ୍ତାଧାରାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଓ ଏ ଦେଶର ଜାତୀୟ ଜୀବନକୁ ସଂଗଠିତ କରିବା ଉଦ୍ଦେଶ୍ୟରେ ଗୋପବନ୍ଧୁ ସାହିତ୍ୟ ସୃଷ୍ଟି ମାଧ୍ୟମରେ ଯାହା କରିଅଛନ୍ତି ତାହା ଓଡ଼ିଆ ସାହିତ୍ୟକୁ ଯେ ସମୃଦ୍ଧ କରିଅଛି ଏଥିରେ ସନ୍ଦେହ ନାହିଁ । ପଣ୍ଡିତ ଗୋପବନ୍ଧୁ କେବଳ ତାଙ୍କର ସମସାମୟିକ ଅବସ୍ଥା ପ୍ରତି ଯେ ସଚେତନ ଥିଲେ ତା ନୁହେଁ । ତାଙ୍କର ଦୃଷ୍ଟିକୋଣ ଜାତୀୟଜୀବନର ସଂଗଠନ ଲାଗି ଭବିଷ୍ୟତ ପ୍ରତି ସଚେତନ ଥିଲା । ସେ ତାଙ୍କର ସମସାମୟିକ ଦେଶବାସୀମାନଙ୍କୁ ସଂଗଠନ କରିଆରେ ଦେଶପ୍ରେମଭାବ ଧାରାରେ ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ ଦେଶର ଭବିଷ୍ୟତ ବଂଶଧରମାନଙ୍କୁ ସେ ଢାଞ୍ଚାରେ ଅନୁପ୍ରାଣିତ କରିବା ପାଇଁ ମନପ୍ରାଣ ଢାଳି ଦେଇଥିଲେ ।

ସେ ସମୟରେ ପ୍ରଚଳିତ ଶିକ୍ଷାପ୍ରଣାଳୀ ଦ୍ୱାରା ଦେଶରେ କେବଳ କେତେକ ପରମୁଖାପେକ୍ଷୀ ପରାଧୀନ ମନୋବୃତ୍ତିର ଶିକ୍ଷିତ ବ୍ୟକ୍ତି ସୃଷ୍ଟି ହେବାର ସେ ଲକ୍ଷ୍ୟ କରିଥିଲେ । ଦେଶର ମୁକ୍ତିଲାଗି ମନୁଷ୍ୟ ଗଠନ କରିବା ଉଦ୍ଦେଶ୍ୟରେ ସେ ଚିନ୍ତାକଲେ । ଏହି ଚିନ୍ତାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ସେ ଗୋଟିଏ ଆଦର୍ଶ-ବିଦ୍ୟାଳୟ ସ୍ଥାପନ କରିବାକୁ ସ୍ଥିର କଲେ । ବିଦ୍ୟାଳୟ ସ୍ଥାପନଲାଗି ଉତ୍କଳଗୌରବ ମଧୁସୂଦନଙ୍କ ପରାମର୍ଶ ଅନୁସାରେ ସତ୍ୟବାଦୀ ଉପଯୁକ୍ତ

ସ୍ଥାନ ବୋଲି ମନୋନୀତ ହେଲା । ୧୯୦୯ ସାଲ ଅଗଷ୍ଟ ମାସ ୨୯ ତାରିଖରେ ସତ୍ୟବାଦୀ ବିଦ୍ୟାଳୟ ସ୍ଥାପିତ ହେଲା । ଶ୍ରୀରାମଚନ୍ଦ୍ରପୁର ମଧ୍ୟ-ଇଂରାଜୀ ସ୍କୁଲଟି ସତ୍ୟବାଦୀକୁ ସ୍ଥାନାନ୍ତରିତ ହେଲା । ଏହି ସ୍କୁଲ ପ୍ରତି ଆକୃଷ୍ଟ ହୋଇ ଓଡ଼ିଶା ବାହାରୁ ମଧ୍ୟ ଛାତ୍ରମାନେ ଆସିଥିଲେ । ଏହି ସ୍କୁଲରେ ଶିକ୍ଷକରୂପେ ୧୯୧୧ ସାଲରେ ପଣ୍ଡିତ ନୀଳକଣ୍ଠ, ୧୯୧୩ ସାଲରେ ପଣ୍ଡିତଗୋଦାବରୀଶ ଏବଂ ୧୯୧୪ ସାଲରେ ପଣ୍ଡିତ କୃପାସିନ୍ଧୁ ଯଥାକ୍ରମେ ଯୋଗ ଦେଇଥିଲେ । ଆଦର୍ଶ ବିଦ୍ୟାଳୟର ପ୍ରାକୃତିକ ବେଷ୍ଟନୀ ମଧ୍ୟରେ ସତ୍ୟବାଦୀ ବନବିଦ୍ୟାଳୟ ସେ ସମୟରେ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । ଜାତିର ଉନ୍ନତି ପାଇଁ ତ୍ୟାଗବୀର ଗୋପବନ୍ଧୁଙ୍କର ଦାନ ଯେ ଅପରିସୀମ ଏ ବିଷୟରେ ମତଦ୍ୱୈଧର ଆଶଙ୍କା ନାହିଁ ।

ଗୋପବନ୍ଧୁଙ୍କର ସାହିତ୍ୟ ସାଧନା ବିଷୟରେ ଆଲୋଚନା କରିବାକୁ ହେଲେ ଆମକୁ ଗୋଟାଏ କଥା ମନେ ରଖିବାକୁ ହେବ ଯେ ତାଙ୍କର ସାହିତ୍ୟ ସୃଷ୍ଟିର ପ୍ରଧାନ ଉଦ୍ଦେଶ୍ୟ ଥିଲା ଜାତୀୟତା-ଭାବର ସଂପ୍ରସାରଣ କରିବା । ସେ ଭଲଭାବରେ ହୃଦୟଙ୍ଗମ କରୁଥିଲେ ଯେ ଓଡ଼ିଆର ଜାତୀୟ ଉନ୍ନତି ପାଇଁ ଓଡ଼ିଆ ସାହିତ୍ୟର ଉନ୍ନତି ଏକାନ୍ତ ଆବଶ୍ୟକ । ତେଣୁ ତାଙ୍କର କାବ୍ୟ, କବିତା, ପ୍ରବନ୍ଧ ପ୍ରଭୃତି ସୃଷ୍ଟି ଭିତରେ ସେହି ଗୋଟିଏ ସ୍ୱର ଶୁଣିବାକୁ ମିଳେ ।

## ( ୨ ) ଗୋପବନ୍ଧୁ ସାହିତ୍ୟର ସ୍ୱରୂପ :—

ଜାତୀୟ ଉନ୍ନତି ନିମିତ୍ତ ଓଡ଼ିଆ ସାହିତ୍ୟର ଉନ୍ନତି କାମନା କରି ପଣ୍ଡିତ ଗୋପବନ୍ଧୁ ତାଙ୍କର ଲେଖନୀ ଚାଳନା କରିଥିଲେ ।

ତାଙ୍କର ଅଧିକାଂଶ ସାହିତ୍ୟ-ସୃଷ୍ଟି ସେ ବନ୍ଦୀଶାଳାରେ ଆବଦ୍ଧ ଥିବା ସମୟରେ ଲିଖିତ । ତାଙ୍କର ବନ୍ଦୀର ଆତ୍ମକଥା, ଧର୍ମପଦ, କାରାକବିତା, ନଚିକେତାଉପାଖ୍ୟାନ ଓ ଗୋ-ମାହାତ୍ମ୍ୟ ହଜାରିବାଗ ଜେଲରେ ଲିଖିତ ହୋଇଥିଲା । ଜୀବନର ବିଭିନ୍ନ ସମୟରେ ଅବକାଶ ସମୟରେ ସେ ଅବକାଶ ଚିନ୍ତାରେ ସ୍ଥାନ ପାଇଥିବା କବିତାଗୁଡ଼ିକ ଲେଖିଥିଲେ ।

## ଅବକାଶ ଚିନ୍ତା:—

ଗୋପବନ୍ଧୁ ତାଙ୍କ ଜୀବନରେ ପ୍ରଭାତ ସମୟରେ ଓ ଯୌବନ ସମୟରେ ସାମୟିକ ଭାବରେ ଯେଉଁ ଖଣ୍ଡକବିତା ଗୁଡ଼ିକ ରଚନା କରିଥିଲେ ସେଗୁଡ଼ିକ ଏହି ପୁସ୍ତକରେ ସ୍ଥାନ ପାଇଅଛି । ଗୋପବନ୍ଧୁଙ୍କର ଏହି କବିତାଗୁଡ଼ିକ ସେ ସମୟରେ ପତ୍ରପତ୍ରିକାରେ ପ୍ରକାଶ ପାଇଲା । ୧୯୧୨ ସାଲରେ ଅବକାଶ ଚିନ୍ତାର ପ୍ରଥମ ସଂସ୍କରଣ ପ୍ରକାଶ ପାଇବା ପରେ ଗୋପବନ୍ଧୁଙ୍କର ଚତୁର୍ଦ୍ଦଶ ଶ୍ରାଦ୍ଧ ଦିବସରେ ୧୯୪୨ ସାଲରେ ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଥିଲା । ଗୋପବନ୍ଧୁ ତାଙ୍କର ଅବକାଶ ସମୟରେ ଯେତେ କବିତା ରଚନା କରିଥିଲେ ଓ ଯେଉଁଗୁଡ଼ିକ ସେ ସମୟରେ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା ସେଗୁଡ଼ିକ ସମସ୍ତ ସଂଗୃହୀତ ହୋଇ ପାରିନାହିଁ । ଅବକାଶ ଚିନ୍ତାର ପ୍ରଥମ ସଂସ୍କରଣରେ ଯେତେଗୁଡ଼ିଏ କବିତା ପ୍ରକାଶ ପାଇଥିଲା ଦ୍ୱିତୀୟ ସଂସ୍କରଣ ବେଳକୁ ତଦପେକ୍ଷା ଅଧିକ କବିତା ଏଥିରେ ସ୍ଥାନ ପାଇଲା ।

ଅବକାଶ ଚିନ୍ତାର ପ୍ରଥମ କବିତା ହେଉଛି "ପ୍ରାର୍ଥନା ।" ଏହି କବିତାରୁ କବିଙ୍କର ଦେଶପ୍ରୀତି ଓ ବିଶ୍ୱପ୍ରେମର ଉଜ୍ଜ୍ୱଳ

ଦୃଷ୍ଟାନ୍ତ ମିଳେ । ପ୍ରାର୍ଥନାର ପ୍ରଥମ ପଦରେ କବି ଜଗତପତିଙ୍କ ନିକଟରେ ଉତ୍କଳର ଉନ୍ନତି ପାଇଁ ପ୍ରାର୍ଥନା କରିଛନ୍ତି । ସେ ଲେଖିଛନ୍ତି—

"ପ୍ରଭୁ ଦୟାମୟ ଜଗତପତି
ଅନାଥର ନାଥ ଅଗତିଗତି,
ତବ ଶ୍ରୀଚରଣେ ଏହି ବିନତି
କରୁଛୁ ଉତ୍କଳ-ଶିଶୁ-ସନ୍ତତି
ମିଳି ଆଜି ଏକ ମନେହେ,
ଦିଅ ନବ ତେଜ ନବୀନ ସାହସ
ଉତ୍କଳମାତା ଜୀବନେ ହେ ।"

ଉତ୍କଳ-ଜନନୀଙ୍କୁ ନବୀନ ତେଜରେ ଉଦ୍‌ଭାସିତ କରିବାପାଇଁ କବି ପ୍ରାର୍ଥନା କରି ଉତ୍କଳର ଅବନତି ପାଇଁ ଦୁଃଖ ପ୍ରକାଶ କରିଅଛନ୍ତି । ଉତ୍କଳର ଉନ୍ନତି କାମନା କରି କବି ସଂକୀର୍ଣ୍ଣ ଦେଶପ୍ରେମର ପରିଚୟ ପ୍ରଦାନ କରିନାହାନ୍ତି । ଭାରତର ମହାଜାତୀୟ ଭାବରେ ଉତ୍କଳର ଜାତୀୟତାର ମିଶ୍ରଣ ପାଇଁ କବି ଉକ୍ତ କବିତାର ଶେଷପଦରେ ପ୍ରାର୍ଥନା କରିଅଛନ୍ତି । ସେ ଲେଖିଛନ୍ତି—

"ସଂସାର ତୁମୁଳ ରଣ ପ୍ରାଙ୍ଗଣେ,
ଉତ୍କଳର ଦୀନ ତନୟଗଣେ,
ପଛରେ କେବେହେଁ ନପଡ଼ୁ ଦେବ,
ଶ୍ରୀମୁଖରୁ ଏହି ଆଦେଶ ହେବ,
ଯେଣି ଅପୂର୍ବ ଉତ୍ସାହ,
ଭାରତର ମହା- ଜାତୀୟ ତରଙ୍ଗେ
ମିଶୁ ଉତ୍କଳ ପ୍ରବାହ ହେ ।"

ଅବକାଶ ଚନ୍ତାର ଦ୍ୱିତୀୟ କବିତା "ବାଣୀ"ରେ କବିଙ୍କର ଠିକ୍ ସେହିପରି ମନୋଭାବର ପ୍ରକାଶ ହୋଇଅଛି । କବିମାନେ ସାଧାରଣତଃ ସରସ୍ୱତୀଙ୍କୁ ଆରାଧନା କରିଥାଆନ୍ତି । ରାଧାନାଥ ଯୁଗରେ ବିଭିନ୍ନ କବି ସରସ୍ୱତୀଙ୍କୁ ଆରାଧନା କରିଅଛନ୍ତି । ମାତ୍ର କବିମାନଙ୍କର ଆରାଧନାର ଉଦ୍ଦେଶ୍ୟ ଭିନ୍ନ ଭିନ୍ନ ରୂପେ ପ୍ରକାଶ ପାଇଅଛି । ତପସ୍ୱିନୀ କାବ୍ୟର ଆରମ୍ଭରେ ଗଙ୍ଗାଧର ମେହେର ସରସ୍ୱତୀଙ୍କୁ ବନ୍ଦନା କରି ନିଜର ଦୈନ୍ୟ ପ୍ରକାଶ କରିଛନ୍ତି । ଗଙ୍ଗାଧର ମେହେରଙ୍କର ଏ ପ୍ରକାର ଦୈନ୍ୟ ପ୍ରକାଶ ପ୍ରାଚୀନ-ସାହିତ୍ୟ ଦ୍ୱାରା ପ୍ରଭାବିତ । ସରସ୍ୱତୀଙ୍କୁ ସମ୍ବୋଧନ କରି ସେ ଲେଖିଛନ୍ତି—

"ଦରିଦ୍ରତା-ପଙ୍କ ପୂର୍ଣ୍ଣ ମୋ ଜୀବନ ସର
ଜଞ୍ଜାଳ-ଜଳଦ-ଜଳେ ଆବିଳ ଉଦର
ଶରଦ ସଦୃଶ ତୋତେ କରି ଦରଶନ
ହୋଇ ଯାଉଅଛି ସେତ ସ୍ୱତଃ-ପରସନ୍ନ ।"

ଗଙ୍ଗାଧର ମେହେରଙ୍କର ଏ ପ୍ରକାର ପ୍ରାର୍ଥନା ନିତାନ୍ତ ଆତ୍ମକେନ୍ଦ୍ରିକ ହୋଇ ପଡ଼ିଛି । କବିବର ରାଧାନାଥ ଏପରି ଆତ୍ମକେନ୍ଦ୍ରିକ ପ୍ରାର୍ଥନା ନ କରି ନିଜର ଦେଶ-ପ୍ରେମର ପରାକାଷ୍ଠା ପ୍ରଦର୍ଶନ କରିବାକୁ ଯାଇ ସାରସ୍ୱତ କ୍ଷେତ୍ରରେ ଉତ୍କଳର ଦୁର୍ଦ୍ଦଶାଲାଗି ଦେବୀ ବୀଣାପାଣିଙ୍କର ଦୟାର ଅଭାବକୁ କାରଣ ରୂପେ ପ୍ରକାଶ କରିଛନ୍ତି ଏବଂ ଉତ୍କଳସାହିତ୍ୟର ଉନ୍ନତି ଲାଗି ଦୃଢ଼ ଆଶା ପୋଷଣ କରିଅଛନ୍ତି । ତାଙ୍କର ଚିଲିକା କାବ୍ୟରେ ସେ ଲେଖିଛନ୍ତି—

"ଦେବୀ ବୀଣାପାଣି ! କେଉଁ ପାପଫଳେ
କରୁଣା ତୋହର ଊଣା ଏ ଉତ୍କଳେ ?
ସ୍ୱଭାବେ ଉତ୍କଳ ଶୋଭାର-ନିଧାନ,
ମାତ୍ର ଏ ଶୋଭାରେ ତୋର ଅଧିଷ୍ଠାନ—
ବିନୁ ସିନା ମାତା ହୋଇଛୁ ବିବଶା,
ଭଜଛୁ ଅରଣ୍ୟ-ପ୍ରସୂନର ଦଶା ।

+ + +

ତୋ କୃପା ବିହୁନେ ଉତ୍କଳମାତାର
ନାମେ ଖ୍ୟାତ ଗ୍ରନ୍ଥେ ପଡ଼ିନାହିଁ ଗାର ।"

କବିବର ରାଧାନାଥଙ୍କର ସ୍ୱଦେଶପ୍ରୀତିର ପରାକାଷ୍ଠା ଉପରୋକ୍ତ ଉଦ୍ଧୃତାଂଶରୁ ପ୍ରକାଶ ପାଇଅଛି । ରାଧାନାଥଯୁଗ ପରେ ଯେତେବେଳେ ସତ୍ୟବାଦୀର ସାଧକଗଣ ଉଗ୍ର ଦେଶପ୍ରେମ ଭାବଧାରାରେ ଉଦ୍‌ବୁଦ୍ଧ ହେଲେ, ସେତେବେଳେ ସେମାନଙ୍କର ସାହିତ୍ୟ ସୃଷ୍ଟିରେ ଦେଶମାତୃକାର ଉନ୍ନତି ପାଇଁ ବହୁ ଭାବଧାରାର ପ୍ରକାଶ ହୋଇଅଛି । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ବାଣୀଙ୍କୁ ଆରାଧନା କରି ଦେଶମାତୃକାର ଉନ୍ନତି ପାଇଁ ପ୍ରାର୍ଥନା କରିଅଛନ୍ତି । ସେ ଏହି କବିତାରେ ଲେଖିଛନ୍ତି—

"ପଙ୍କଜ-ବାସିନୀ ଦେବୀ ନିତ୍ୟ ବୀଣାପାଣି,
ଗାଅ ସେ ଅମର ବୀଣା କୃପାକରି ଥରେ,
ପ୍ରବେଶୁ ତା ଦିବ୍ୟନାଦ ମୃତସଞ୍ଜୀବନୀ
ମୃତ ପ୍ରାୟ ଭାରତର ହୃଦୟ-କନ୍ଦରେ ।

ଭାରତେ ଉତ୍କଳ ପୁଣି ଅତି ଅଭାଗିନୀ,
ଧନେ ଜନେ, ମାନେ, ଜ୍ଞାନେ, ବିକ୍ରମ ସାହସେ,
ଆଦେଶେ ମା ପ୍ରୀତି ତବ ଆବାସ-ନନ୍ଦିନୀ
ଗୌରବ-ତପନେ ବରୁ ଉତ୍କଳ ନଭସେ ।"

କେତେକ ମହାପୁରୁଷଙ୍କର ଜୀବନୀକୁ କେନ୍ଦ୍ରକରି କେତେଗୁଡ଼ିଏ ସ୍ମୃତିମୂଳକ କବିତା ଅବକାଶ ଚିନ୍ତାର କଳେବର ମଣ୍ଡନ କରିଅଛି । ଶମ୍ଭୂକର ବାଜପେୟୀ, ଭକ୍ତ କବିବର ଶ୍ରୀ ଜଗନ୍ନାଥ ଦାଶ, ବଳରାମ ଦାଶ, ସାରଳା ଦାସ, ଅନଙ୍ଗଭୀମ ଦେବ, ପୁରୁଷୋତ୍ତମ ଦେବ, ଉପେନ୍ଦ୍ର ଭଞ୍ଜ, ସାମନ୍ତଚନ୍ଦ୍ର ଶେଖର, ସ୍ୱର୍ଗୀୟ ପଣ୍ଡିତ ହରିହର ଦାଶ ଶର୍ମା ନାମଧେୟ କବିତାଗୁଡ଼ିକ ଏହି ଶ୍ରେଣୀର । ଅର୍ଥାତ ଉତ୍କଳର ମହାପୁରୁଷ ତଥା ବୀରମାନଙ୍କର ଯଶୋଗାନ ଉଦ୍ଦେଶ୍ୟରେ କବିତାଗୁଡ଼ିକ ଲିଖିତ । ଶମ୍ଭୂକର ବାଜପେୟୀ ତାଙ୍କର ପାଣ୍ଡିତ୍ୟଯୋଗୁଁ ବିଖ୍ୟାତ । ତାଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ଉତ୍କଳର ରାଜା ତାଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରି ତାଙ୍କୁ ବୃତ୍ତିଦାନ କରିଥିଲେ । ମାତ୍ର ଏ ପ୍ରକାର ଅନୁଗ୍ରହ ବ୍ରହ୍ମତେଜ ନାଶକ କହି ସେ ଦାନ ନେବାକୁ ଅସମ୍ମତ ହେଲେ । ରାଜାଜ୍ଞାର ଅବମାନନା କରିବା ହେତୁ ରାଜା କ୍ରୋଧାନ୍ୱିତ ହୋଇ ତାଙ୍କୁ ଦେଶରୁ ବହିଷ୍କାର ଆଦେଶ ଦେଇଥିଲେ । ସେ ସେଥିପାଇଁ ଉତ୍କଳ ତ୍ୟାଗ କରି କାଶୀରେ ବାସ କରି ଜୀବନ ଅତିବାହିତ କରିଥିଲେ । ସେହି ଋଷିପ୍ରତିମ ଶମ୍ଭୂକର ବାଜପେୟୀଙ୍କ ସ୍ମୃତି ଉଦ୍ଦେଶ୍ୟରେ କବି କବିତା ରଚନା କରିଥିଲେ । କବିତାର ଶେଷରେ ସେ ଲେଖିଛନ୍ତି—

"ହେ ଉତ୍କଳ ଆଦ୍ୟ- ଋଷି ବ୍ରହ୍ମବାଦୀ
କର ଏହ୍ନ ଆଶୀର୍ବାଦ,
ପରକାଶୁ ତବ ପ୍ରଚ୍ଛନ୍ନ ସ୍ୱଭାବ
ଧ୍ୱଂସୁ ଜାତି ଅବସାଦ ।"

ଜଗନ୍ନାଥ ଦାସଙ୍କର ଯଶୋଗାନ କରି କବି ସେହିପରି ତାଙ୍କର ଆଦର୍ଶକୁ ଗ୍ରହଣ କରିନେବା ପାଇଁ ଦେଶବାସୀଙ୍କୁ ଆହ୍ୱାନ କରିଛନ୍ତି । ଚିଲିକା କାବ୍ୟରେ ରାଧାନାଥ ଯେପରି ଉତ୍କଳର ଉଜ୍ଜ୍ୱଳ ଭବିଷ୍ୟତ ଲାଗି ଆଶା ପୋଷଣ କରି ବହୁ କବିଙ୍କର ଆବିର୍ଭାବ ବିଷୟ ବର୍ଣ୍ଣନା କରିଛନ୍ତି, ସେହିପରି ଗୋପବନ୍ଧୁ ଭକ୍ତକବି ଜଗନ୍ନାଥ ଦାସ କବିତାର ଶେଷଭାଗରେ ଲେଖିଛନ୍ତି—

"ତୁମ୍ଭ ସମାଧିରୁ ଆହେ କବିଗୁରୁ
କେତେ ଦାର୍ଶନିକ କବି,
ଜନମିଣ କାଳେ ଉତ୍କଳ-ସାହିତ୍ୟେ
ଦେବେ ନବ ନବ ଛବି ।
କେତେ ଧର୍ମବୀର ଦେବେ ନିଜ ଶିର
ସ୍ୱଦେଶ ସ୍ୱଧର୍ମ ହିତେ,
ଅସଂଖ୍ୟ ନାସ୍ତିକ ହୋଇବେ ପ୍ରେମିକ
ତୁମ୍ଭ ମଧୁମୟ ଗୀତେ ।"

ସ୍ମୃତିମୂଳକ କବିତାଗୁଡ଼ିକରେ କବିଙ୍କର ସ୍ୱର ଏକ ପ୍ରକାର ରୀତିରେ ପ୍ରକାଶ ପାଇଅଛି । ମହାପୁରୁଷମାନଙ୍କର ଜୀବନର ଆଦର୍ଶକୁ ଦେଶବାସୀ ସ୍ମରଣ କରି ସେହି ଆଦର୍ଶରେ ଅନୁପ୍ରାଣିତ ହେବାପାଇଁ କବି ଇଚ୍ଛା କରିଥିଲେ । ଅତୀତର ସ୍ମୃତିକୁ ଭୁଲିଗଲେ

ଜାତି କେବେ ହେଲେ ତାର ଐତିହ୍ୟ ବା ପରଂପରାକୁ ରକ୍ଷା କରିପାରିବ ନାହିଁ । ତେଣୁ କବି ଜାତିର କାନରେ ଅତୀତର ସ୍ମୃତିକୁ ବାରମ୍ବାର ମନେ ପକାଇଅଛନ୍ତି ।

ପ୍ରାକୃତିକ ବିଭବକୁ ଆଶ୍ରୟ କରି ଲିଖିତ କବିଙ୍କର କେତେ-ଗୁଡ଼ିଏ କବିତା ଅବକାଶ ଚିନ୍ତାରେ ପ୍ରକାଶ ପାଇଅଛି । କାଠଯୋଡ଼ି ତୀରେ ସାୟଂକାଳ, କାଠଯୋଡ଼ୀତୀରରେ ଚନ୍ଦ୍ରାଲୋକ ନିଶୀଥ, ଭାର୍ଗବୀ ପ୍ରତି, ଖଣ୍ଡଗିରି ଶିଖରେ, କଟକର ଶିଳାସେତୁ, ବାଲିଯାତ୍ରା ସନ୍ଧ୍ୟାରେ ମହାନଦୀ ତୀରେ, ରେଳ ଉପରେ ଚିଲିକା ଦର୍ଶନ, ଏକ ଅସାର ବର୍ଷାର ଅବ୍ୟବହିତ ପରେ ନଭଃ ଦର୍ଶନ ପ୍ରଭୃତି କବିତାଗୁଡ଼ିକରେ କବି ପ୍ରକୃତିକୁ ବର୍ଣ୍ଣନାର ପୁରୋଭାଗରେ ରଖି ଜାତୀୟତା-ଭାବର ପ୍ରକାଶ କରିଅଛନ୍ତି ।

କାଠଯୋଡ଼ୀତୀରରେ ସାୟଂକାଳ କବିତାଟି ଦୁଇଭାଗରେ ବିଭକ୍ତ । ସୂର୍ଯ୍ୟାସ୍ତ ପୂର୍ବର ବର୍ଣ୍ଣନାକୁ କବିତାର ପ୍ରଥମ ଖଣ୍ଡ ଓ ସୂର୍ଯ୍ୟାସ୍ତ ପରର ବର୍ଣ୍ଣନାକୁ କବିତାର ଦ୍ୱିତୀୟ ଖଣ୍ଡ ରୂପେ ରଚନା କରାଯାଇଅଛି । ଉକ୍ତ କବିତା ରଚନାରେ ରାଧାନାଥଙ୍କର ଚିଲିକାକାବ୍ୟର ସନ୍ଧ୍ୟା ବର୍ଣ୍ଣନାର ପ୍ରଭାବ ପରିଲକ୍ଷିତ ହୁଏ । କବିଙ୍କର ପ୍ରକୃତି ପ୍ରେମିକତା ଏହି କବିତାରେ ପ୍ରକାଶ ପାଇଅଛି । କବି ଲେଖିଛନ୍ତି—

"ସଂସାରର ଲଜ୍ଜା ଘୃଣା ପ୍ରବଞ୍ଚନା ଜାଲେ
ପ୍ରପୀଡ଼ିତ ହୁଏ ମୋର ମାନସ ଯେ କାଳେ,
ନିଭୃତେ ତୋ ତୀରେ ଆସି କଲେ ବିଚରଣ,
କି ମୋହନ ମନ୍ତ୍ରେ କରୁ ସକଳ ହରଣ ।

ବିବିଧ ସ୍ୱର୍ଗୀୟ ଶକ୍ତି ନାନା ପ୍ରିୟଭାବ,
କଳୁଷିତ ହୃଦେ ମୋର କରାଉ ଉଦ୍‌ଭବ ।

ତୋର ପଦଯୁଗେ ମୁହିଁ ଚିରକାଳ ଋଣୀ,
ଏହିଭାବ ଥାଉ ନିତି ହେ ସୁର ତରୁଣୀ ।"

ଖଣ୍ଡଗିରି ଶିଖରେ କବିତାରେ କବି ଅତୀତ ଉତ୍କଳର ଗୌରବ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଧର୍ମ ବିଷୟରେ ଉତ୍କଳର ଉଦାରତା ପ୍ରସଙ୍ଗରେ ବର୍ଣ୍ଣନା କରିଅଛନ୍ତି । ସେ ଲେଖିଛନ୍ତି—

"ଚଉପାଶେ ଦିଶେ କେତେ ଦେବାଳୟଚୟ,
କାଳଗର୍ଭେ କେତେ ପୁଣି ଭଜିଲେଣି ଲୟ ।

କି ଅସୀମ ଶକ୍ତି କେତେ ବିପୁଳ ବିଭବେ,
କେତେ ଧର୍ମ ଅନୁରାଗେ ଗଢ଼ା ଏ ସରବେ ।

ବୈଦିକ ମହାଧର୍ମ, ଏଥି ସାମ୍ୟ ମୈତ୍ରୀଭାବେ
ସମ୍ମିଳିତ ପରସ୍ପର ଅଦ୍ଭୁତ ପ୍ରଭାବେ ।
ଧର୍ମେ ଧର୍ମେ କିମ୍ବା ଦ୍ୱେଷ ବାଦ ଅହଙ୍କାର,
ଅତୀତ ଉତ୍କଳ ଆହା କି ମହା ଉଦାର !"

ବାଲିଯାତ୍ରା ସନ୍ଧ୍ୟାରେ ମହାନଦୀ ତୀରେ କବିତାର ବର୍ଣ୍ଣନା କବିବର ରାଧାନାଥଙ୍କର ଦରବାର କାବ୍ୟର ବର୍ଣ୍ଣନାଦ୍ୱାରା ପ୍ରଭାବିତ । ମାତ୍ର କବି ଉକ୍ତ କବିତାରେ ଅତୀତର ଗୌରବ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଉତ୍କଳବାସୀଙ୍କର ଶୁଭଙ୍କର ଭବିଷ୍ୟତ ପାଇଁ ଆଶାପୋଷଣ କରିଛନ୍ତି । କବିତାର ଶେଷାଂଶରେ ସେ ଲେଖିଛନ୍ତି—

"ତାଳଦଣ୍ଡ ସୁଧାକର ଦିବ୍ୟ ସୁଧାଝରି,
ଉଠୁ ମହାନଦୀ-ବକ୍ଷେ ଉତ୍ତୁଙ୍ଗ ଲହରୀ ।
ଧୋଇ ବାରବାଟୀ-ମୁଖ କରୁ ସମୁଜ୍ଜ୍ୱଳ,
ଶୁଦ୍ଧ ଧର୍ମମଦେ ସର୍ବେ ହୁଅନ୍ତୁ ବିହ୍ୱଳ ।
ସଞ୍ଚରୁ ଏ ସଂକୀର୍ତ୍ତନେ ପବିତ୍ର ଉଚ୍ଛ୍ୱାସ
କର୍ମବୀର, ଧର୍ମବୀର ହୁଅନ୍ତୁ ପ୍ରକାଶ ।"

ରେଳ ଉପରେ ଚିଲିକା ଦର୍ଶନ କରିବାରେ କବି ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି । କବିବର ରାଧାନାଥଙ୍କର ଚିଲିକା କାବ୍ୟ କଥା ମଧ୍ୟ ସେ ପ୍ରସଙ୍ଗୋଚିତ ଭାବରେ ପ୍ରକାଶ କରିଛନ୍ତି । କବି ନିଜକୁ ରାଧାନାଥଙ୍କ ସହିତ ତୁଳନା କରି ନିଜର ଭାବୁକତାର ଅଭାବ କଥା ଉଲ୍ଲେଖ କରିଛନ୍ତି । ରାଧାନାଥଙ୍କ ପ୍ରସଙ୍ଗରେ ସେ ଲେଖିଛନ୍ତି—

"ଦେବୀ ବୀଣାପାଣି ଶାଶ୍ୱତ ସେବକ
କବି ରାଧାନାଥ ସୁଷମାଗ୍ରାହକ
ଭ୍ରମି ବହୁସ୍ଥାନ ବିଶାଳ ଭାରତେ
ନଦ-ନଦୀ-ମରୁ-କାନନ-ପର୍ବତେ
ଦେଖିଲେ ପ୍ରକୃତି ବିବିଧ ପ୍ରକାଶ
କିନ୍ତୁ ଶୋଭା ଲୁବ୍‌ଧ ଶୁଦ୍ଧ ଅଭିଳାଷ
ସୁଖ-ଶାନ୍ତି-ପ୍ରୀତି କାହିଁ ଏକାଧାରେ
ନ ପାଇଲେ ଯଥା ମିଳେ ଚୋହଠାରେ ।

ଉତ୍କଳର ତୁହି ସୌନ୍ଦର୍ଯ୍ୟର ଖଣି
ସାରସ୍ୱତ ନେତେ ବାଛୁ ତହୁଁ ମଣି

ସୁଦକ୍ଷ ବନ୍ଧାଣି ରଚି ଯେଉଁ ହାର
ଅର୍ପିଲେ ଉତ୍କଳ ଭାରତୀ ଗଳାର
ଚିରଦିନ ତାହା ରଜବ ରୁଚିର
ତା ଦେଖି ଭାବୁକେ ଲୋଡ଼ିବେ ତୋ ଶିର ।"

ଗୋପବନ୍ଧୁ ଜଣେ ଗୁଣ ଚିହ୍ନାର ଗ୍ରାହକ ଭାବରେ ଏଠାରେ କବିବର ରାଧାନାଥଙ୍କର ପ୍ରଶଂସା ଗାନ କରିଅଛନ୍ତି ।

ବିଂଶ ଶତାବ୍ଦୀର ପ୍ରଥମ ଦିନରେ ବାରବାଟୀ ଦର୍ଶନ କବିତାରେ କବି ଗୋପବନ୍ଧୁ ନୂତନ ଶତାବ୍ଦୀକୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ନୂତନ ଶତାବ୍ଦୀଠାରୁ ଉତ୍କଳ ପାଇଁ ଶୁଭକାମନା ଆଶା କରିଛନ୍ତି । ଅତୀତରେ ବାରବାଟୀ ଦୁର୍ଗର ଗୌରବମୟ ଅବସ୍ଥିତିକୁ କବି ମନେ ପକାଇଛନ୍ତି । ସେ ଗୌରବମୟ ଅବସ୍ଥା ଅସ୍ତମିତ ହୋଇ ଯାଇଥିବାରୁ କବିଙ୍କ ମନରେ ଖେଦ ପ୍ରକାଶ ପାଇଅଛି । କବିତାର ଶେଷରେ କବି ଲେଖିଛନ୍ତି—

"ଥିଲା ଯେବେ କିଛି ଉତ୍କଳର ଦୋଷ,
ଦୋଷ ଅନୁମତେ କରିଅଛ ରୋଷ ।

ହୋଇଅଛି ଶାସ୍ତି କଷଣ ଅପାର,
ନ କର ଅଧିକ ଆଉ ତିରସ୍କାର ।

ଏଣିକି କରୁଣା ଅଟଇ ବିହିତ,
ସାଧ ନବଯୁଗେ ଉତ୍କଳର ହିତ ।

ଉତ୍କଳ ତନୟେ ଦିଅ ନବବଳ,
ଉତ୍କଳ ପାଦପେ ରସମୟ ଫଳ ।

ଉତ୍କଳ ସରିତେ ପବିତ୍ର ଜୀବନ,
ଉତ୍କଳ କାନନେ ସ୍ୱର୍ଗୀୟ ସୁମନ ।
ଉତ୍କଳ ଆକାଶେ ନବଯଶଃ ରବି,
ଉତ୍କଳ ପ୍ରକୃତି ଧରୁ ନବ ଛବି ।"

ଉତ୍କଳ ପାଇଁ କବିଙ୍କର ବ୍ୟାକୁଳତା ଏଠାରେ ଲକ୍ଷ୍ୟ କରିବାର କଥା । କବିଙ୍କର ଏହିସବୁ ଉକ୍ତି ମଧ୍ୟରେ ତାଙ୍କର ଉତ୍କଳମଣି ଉପାଧିର ସାର୍ଥକତା ନିହିତ ।

'ଗ୍ରୀଷ୍ମେ ଖୁଣ୍ଟାଗଛ' କବିତା କବିଙ୍କର ମୌଳିକ ଚିନ୍ତାଧାରାର ପରିଚୟ ଦିଏ । ଗ୍ରୀଷ୍ମକାଳରେ ପତ୍ର ଝଡ଼ିଥିବା ଏକ ଖୁଣ୍ଟାଗଛକୁ ଦେଖି କବିଙ୍କ ମନରେ ଏକ ସୁନ୍ଦର କଳ୍ପନାର ଭାବୋଦୟ ହୋଇଅଛି । କବି ବର୍ଣ୍ଣନା କରି ଅଛନ୍ତି ଯେ ଗଛଟିର ଯୌବନ ସମୟରେ ତାର ସୁପକ୍ୱ ଫଳ, ପତ୍ରଦ୍ୱାରା ଛାୟା ଇତ୍ୟାଦି ପ୍ରଦାନ କରି ଅଶେଷ ପ୍ରାଣୀଙ୍କର ଉପକାର ସାଧନ କରିଥିଲା । ବାର୍ଦ୍ଧକ୍ୟ ଆସିବାରୁ ସେ ଯତିବ୍ରତ ଧାରଣ କରିଅଛି । ତେଣୁ ଖୁଣ୍ଟାଗଛକୁ କବି ଜଣେ ଯୋଗୀରୂପେ ଗ୍ରହଣ କରିନେଇଛନ୍ତି, କବି ଲେଖିଛନ୍ତି—

"ଧରିଣ ଯତିଦୀକ୍ଷା ସାଧୁଛୁ ଯୋଗ,
ପରମ ବ୍ରହ୍ମେଚିତ୍ତ କରି ସଂଯୋଗ ।

ପ୍ରଖର ରବିକରେ ଟେକିଛୁ ମଥା,
ତପ ପ୍ରଭାବେ ହୃଦେ ନ ଲାଗେ ବ୍ୟଥା ।

ଚଉପାଶେ ଦାବାଗ୍ନି ପ୍ରଚଣ୍ଡେ ଜଳେ,
ଅନଳକୁଣ୍ଡ ଯଥା ତପସ୍ୟା ସ୍ଥଳେ ।

କଳ୍ପଯୋଗୀ ପରାୟେ ଦିଶେ ଶରୀର,
ରହିଛି ଅସ୍ଥି ଚର୍ମ, ନାହିଁ ରୁଧିର ।
ଦେଖିଣ ଏ ନୀରସ ସ୍ଥବିର ତନୁ,
ଭୟ ଭକତି ଭାବ ଉପୁଜେ ମନୁଁ ।
ପଡ଼ଇ ସ୍ମୃତି-ପଥେ ଅତୀତ କଥା,
ଭାରତର ଗୌରବ ଆଶ୍ରମ ପ୍ରଥା ।"

ଗୋଟିଏ କାଙ୍କଣ ଗଛ କବିତାରୁ କବିଙ୍କର ସ୍ୱାଧୀନ ମନୋବୃତ୍ତିର ଯଥେଷ୍ଟ ପରିଚୟ ମିଳେ । ଗୋଟିଏ କାଙ୍କଣ ଗଛ ତଳେ ମାଡ଼ି ଆନନ୍ଦରେ ବଢ଼ୁଥିଲା । ଗଛଟିକୁ ମାଡ଼ିବା ପାଇଁ ଗଛରେ ଗୋଟିଏ ରଞ୍ଜା ଦିଆଗଲା । ତା ପରେ ଦେଖାଗଲା ଯେ କାଙ୍କଣ ଗଛଟି ମରି ଝାଉଁଳି ପଡ଼ିଛି । କବି ମଲା କାଙ୍କଣ ଗଛକୁ ଦେଖି ମନ ମଧ୍ୟରେ ଏକ ଚମତ୍କାର ଭାବନାକୁ ସ୍ଥାନ ଦେଇଅଛନ୍ତି । କବି ବର୍ଣ୍ଣନା କରିଛନ୍ତି ଯେ କାଙ୍କଣ ଗଛଟି ସ୍ୱାଧୀନ ଭାବରେ ମାଡ଼ି ବଢ଼ୁଥିଲା । ସ୍ୱାଧୀନ ଭାବରେ ସେ ତାର ଜୀବନ କଟାଇ ଥାଆନ୍ତା । ମାତ୍ର ଯେତେବେଳେ ଗୋଟିଏ ରଞ୍ଜାକୁ ଆଶ୍ରୟ କରି ଜୀବନ କଟାଇବା ପାଇଁ ତାକୁ ଦିଆଗଲା, ସେତେବେଳେ ସେ ତାହା ସହି ପାରିଲା ନାହିଁ । ସେ ମନେକଲା, ପର ଉପରେ ଆଶ୍ରୟ କରି ବଢ଼ି ହେବାଠାରୁ ବରଂ ମରିଯିବା ଶତଗୁଣେ ଶ୍ରେୟସ୍କର । ତେଣୁ ସେ ମୃତ୍ୟୁକୁ ବରଣ କଲା । କବିତାର କଥାବସ୍ତୁର କଳ୍ପନା ସମ୍ପୂର୍ଣ୍ଣ ନୂତନ ଧରଣର । ଏହା କବିଙ୍କର ସ୍ୱାଧୀନତା ପିପାସା ପ୍ରଦର୍ଶନ କରିଅଛି ।

'ଅନାଥ କଳିକା' କବିତାରେ କବି କଳିକାର ଦୁଃଖରେ ଦୁଃଖିତ ହୋଇ ଲେଖିଛନ୍ତି—

"ପ୍ରଣୟର ସ୍ଥାନ ନୁହେଁ ଏ ସଂସାର ଏକା,
ପ୍ରେମେ ପ୍ରଣୟୀ ସଙ୍ଗତେ ହେବ ସ୍ୱର୍ଗେ ଦେଖା ।
ଏହି ଦିବ୍ୟ ସାନ୍ତ୍ୱନାରେ ଆଶ୍ୱାସିଣ ମନେ,
କ୍ଷଣେ ଏଥି ରହି ଚଲ ଅମର ଭୁବନେ ।"

ପ୍ରଣୟ ବିଷୟରେ କବିଙ୍କର ବିଶ୍ୱାସ ହିନ୍ଦୁ ପରମ୍ପରାକୁ ଅନୁସରଣ କରିଅଛି । ଭାରତୀୟ ହିନ୍ଦୁର ବିଶ୍ୱାସ କବିଙ୍କ ମନ ମଧ୍ୟରେ ଆସନପାଡ଼ି ବସିଛି ।

କବିଙ୍କର ବହୁ ସାମୟିକ ଭାବନାର ଧାରା ଉକ୍ତ କବିତା-ଗୁଡ଼ିକରେ ପ୍ରକାଶ ପାଇଅଛି । କବିଙ୍କର ଚିନ୍ତାଧାରା ସ୍ୱତନ୍ତ୍ର । ତାଙ୍କୁ ଯେତେବେଳେ ଛବିଶ ବର୍ଷ ପ୍ରବେଶ କଲା ସେତେବେଳେ ସେ ଛବିଶ ବର୍ଷ ପ୍ରବେଶ ନାମକ କବିତାରେ ଲେଖିଛନ୍ତି—

"ଧର୍ମ ଅନୁକୂଳ ଯେବେ ମୋ କାମନାଚୟ,
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ ।"

କବିଙ୍କର ବିଭୁପ୍ରେମ, ସ୍ୱଦେଶ-ପ୍ରୀତି, ପ୍ରକୃତିପ୍ରେମିକତା ଓ ସଂବେଦନଶୀଳତା ତାଙ୍କର ପ୍ରତ୍ୟେକ କବିତାରେ ପ୍ରକାଶ ପାଇଅଛି । ଏହି କବିତାଗୁଡ଼ିକ ବିଭିନ୍ନ ସମୟରେ ଲିଖିତ ହୋଇଥିଲେହେଁ କବିଙ୍କର କବି-ମାନସ ପ୍ରତ୍ୟେକ କବିତାରେ ଏକ ନୀତିର ଅନୁସରଣ କରିଅଛି ।

**କାରାକବିତା:—**

କବି ୧୯୨୩-୨୪ ସାଲରେ ଦୁଇବର୍ଷକାଳ ହଜାରିବାଗ୍ ଜେଲ୍‌ରେ ବନ୍ଦୀଥିବା ସମୟରେ ବହୁ କବିତା ରଚନା କରିଥିଲେ ।

ହଜାରିବାଗ୍ ଜେଲରେ ଥିବା ସମୟରେ ତାଙ୍କର ପ୍ରଧାନ କବିତା ବନ୍ଦୀର ଆତ୍ମକଥା ରଚିତ ହୋଇଥିଲା । ବନ୍ଦୀର ଆତ୍ମକଥାକୁ ଛାଡ଼ିଦେଲେ ଅନ୍ୟକବିତାଗୁଡ଼ିକ ତାଙ୍କର ମୃତ୍ୟୁ ପରେ ସମାଜର ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟାଗୁଡ଼ିକରେ ପ୍ରକାଶ ପାଇଥିଲା । ତା ପରେ ଏହି କବିତାଗୁଡ଼ିକ ଏକତ୍ର କରି କାରା-କବିତା ନାମରେ ପ୍ରକାଶ କରା ଯାଇଅଛି ।

କାରାକବିତାରେ ତେର ଗୋଟି କବିତା ସ୍ଥାନ ପାଇଅଛି । ଏହାର ପ୍ରଥମ କବିତା ନିତ୍ୟଧାମ ନୀଳାଚଳ । ଏଥିରେ ନୀଳାଚଳ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ଏହି ମାହାତ୍ମ୍ୟ ବର୍ଣ୍ଣନା ପଞ୍ଚସଖାଯୁଗର କବିମାନଙ୍କର ଲେଖାରୁ ଆତ୍ମପ୍ରକାଶ କରିଥିବା ବିଭିନ୍ନ ମାହାତ୍ମ୍ୟ ପରି ନୁହେଁ । କବିଙ୍କର ସଂସ୍କାରବାଦୀ ଦୃଷ୍ଟି-କୋଣରେ ଯେପରି ମାହାତ୍ମ୍ୟ ପରିଦୃଷ୍ଟ ହେବାର କଥା ତାହା ହିଁ ଦେଖା ଦେଇଅଛି । କବିତାର ଶେଷ ପଦରେ ଅଛି—

"ନାହିଁ ଜାତିଭେଦ, ନାହିଁ ଧର୍ମଭେଦ
ସାମ୍ୟ ମୈତ୍ରୀ ମନ୍ତ୍ର ଗାଏ ଯାର ବେଦ,
କେ କରିବ ଭବେ
ଦେବତା ମାନବେ
ନୀଳାଚଳେ ତାର ପ୍ରବେଶ ନିଷେଧ ।"

ଜଣେ ଆଜୀବନ ସହକର୍ମୀଙ୍କ ଉଦ୍ଦେଶ୍ୟରେ କବି ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ ନାମକ କବିତା ଲେଖିଥିଲେ । ଉକ୍ତ କବିତାଟିରେ କବି ତାଙ୍କର ସହକର୍ମୀଙ୍କର ଦାରୁଣ ଧକ୍କାରେ ବ୍ୟଥିତ ହୋଇ ନିଜର ସରଳ ମନୋବୃତ୍ତିର ପ୍ରକାଶ କରିଅଛନ୍ତି ।

କବି ଏଥିପାଇଁ ବିଶେଷଭାବରେ ମର୍ମାହତ ହୋଇ ଅଛନ୍ତି । ସେ ଯେତେବେଳେ ତାଙ୍କ ବନ୍ଧୁଙ୍କଠାରୁ ଆଶାଜନକ ବ୍ୟବହାର ପାଇଲେ ନାହିଁ ସେତେବେଳେ ସେ ନିଜମନକୁ ବହୁଭାବରେ ବୁଝାଇ ଅଛନ୍ତି । ସ୍ନେହ ମମତାର ମୂଲ୍ୟ ବିଷୟରେ କବି ବହୁକଥା ମଧ୍ୟ ପ୍ରକାଶ କରି ଅଛନ୍ତି । ପ୍ରିୟଜନ ନିକଟରେ ସ୍ନେହ ମମତା କପରି କାର୍ଯ୍ୟ କରେ ତାହା ପ୍ରକାଶ କରିବାକୁ ଯାଇ କବି ଲେଖିଛନ୍ତି—

"ଜୀବନ କି ଖାଲି ନିରଶାର ବାଲି
ମରୁ-ମରୀଚି କି ସେନେହ ପ୍ରୀତି
ତେବେ କି ଆଶାରେ କହ ଏ ସଂସାରେ
ପରଲାଗି ନର ମରୁଛି ନିତି ?
ପ୍ରେମ ପରି ସହେ ସହି ସୁଖପାଏ
ପ୍ରେମ ନ ଜାଣଇ କେବେ ଶୋଚନା,
ପ୍ରିୟଜନ ନୁହେ ପ୍ରେମିକ ବିମୁଖ
ହେଲେ ହେଉ ପଛେ ଗୁରୁ ଗଞ୍ଜନା ।"

ଉତ୍କଳମଣି ଗୋପବନ୍ଧୁଙ୍କର ସରଳ ମନର ପରିଚୟ ଏହି କବିତାରୁ ମିଳିଥାଏ । ଜୀବନର କୌଣସି ଏକ ପରିସ୍ଥିତିରେ କବି ଭଗବାନଙ୍କ ଉଦ୍ଦେଶ୍ୟରେ "କାହିଁ ଅଛ" ବୋଲି ଏକ କବିତା ଲେଖିଥିଲେ । ସଂସାରର ଅନ୍ଧକାର ମଧ୍ୟରେ ମନୁଷ୍ୟ ଯେତେବେଳେ ପଥହରା ହୁଏ, ସେତେବେଳେ .ସେହି ପରମେଶ୍ୱରଙ୍କ କୃପାରୂପକ ଦିବ୍ୟାଞ୍ଜନ ଭିକ୍ଷା କରିବା ଛଡ଼ା କବିଙ୍କର ଅନ୍ୟ କୌଣସି ଉପାୟ ନାହିଁ । "ଆହା ଭୁଲିଗଲେ" ନାମକ କବିତାରେ ମଧ୍ୟ କବି ସେହିପରି ଆଧ୍ୟାତ୍ମିକ ଭାବର ବର୍ଣ୍ଣନା କରି ଅଛନ୍ତି । ତାଙ୍କ ନିକଟରେ ବସି ତାଙ୍କର ପ୍ରାଣର ଦେବତା ବଂଶୀବାଦନ କରି ତାଙ୍କୁ ଜାଗ୍ରତ

ହେବା ନିମିତ୍ତ ନିର୍ଦ୍ଦେଶ ଦେବା ସତ୍ତ୍ୱେ ତାଙ୍କୁ ସେ ଦେଖିପାରିଲେ ନାହିଁ । କିନ୍ତୁ ନିର୍ଦ୍ଦେଶ ମନୁଷ୍ୟ ଏହିପରି ହରାଏ, ଅନୁତାପ କରେ । ଏହି ଦୁଇଟି କବିତାରେ ସେପରି କିଛି ଉଚ୍ଚାଙ୍ଗ ଭାବନାର ପ୍ରକାଶ ନାହିଁ ।

ପିତୃପକ୍ଷ ତର୍ପଣ କବିତାଟି ଏକ ଦୀର୍ଘାକୃତି ବିଶିଷ୍ଟ କବିତା । ହଜାରିବାଗ୍ ଜେଲ୍‌ରେ ବନ୍ଦୀଥିବା ସମୟରେ ପିତୃପକ୍ଷ ପଡ଼ିଅଛି । ଏହି ପିତୃପକ୍ଷରେ କବି ବନ୍ଦୀଶାଳାରେ ଥାଇ ତର୍ପଣ କରିଥିଲେ । କବିଙ୍କ ମନରେ ପ୍ରଶ୍ନ ଉଠିଛି ଯେ ବନ୍ଦୀଶାଳାରେ ଆବଦ୍ଧ ଥିବା ବନ୍ଦୀ ହାତରେ ତର୍ପଣ କରିଗଲେ ପିତୃପୁରୁଷ ତାହାକୁ ଗ୍ରହଣ କରନ୍ତି ତ ? ଯଦି ପିତୃପୁରୁଷ ତାହା ଗ୍ରହଣ ନ କରନ୍ତି ତାହେଲେ ତାଙ୍କର ଅଯଥା ପରିଶ୍ରମ ହିଁ ସାର । ତାଙ୍କର ବନ୍ଦୀ ହେବାର କାରଣ ସମ୍ପର୍କରେ କବି ଆଲୋକପାତ କରିଛନ୍ତି । ସେ ଜଣେ ରାଜନୈତିକ ଅପରାଧୀ ରୂପେ ଅଭିଯୁକ୍ତ । ମାତ୍ର ସେ ନିଜକୁ ତାହା ମନେ କରିନାହାନ୍ତି । କାରଣ କବିଙ୍କ ମତରେ ଭାରତବର୍ଷରେ ସେତେବେଳେ ରାଜନୀତି ନ ଥିଲା । ତେଣୁ ସେ ରାଜନୈତିକ ଅପରାଧୀ ହେଲେ କିପରି ? ଭାରତବର୍ଷର ଶାସନ କ୍ଷେତ୍ରରେ ଇଂରେଜ ଜାତିର ଅନ୍ୟାୟ ଅତ୍ୟାଚାର ଫଳରେ ଦେଶବାସୀ କିପରି ଦୁଃଖରେ କାଳାତିପାତ କରିଥିଲେ ତାହା କବି ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଭାରତବର୍ଷରେ ସୁବ୍ୟବସ୍ଥା ପ୍ରତିଷ୍ଠିତ ହେବା ପାଇଁ ସେ ପିତୃପୁରୁଷଙ୍କୁ ଜଣାଇଛନ୍ତି । ଭାରତର ପବିତ୍ର ଆଦର୍ଶ ପୁଣି ଫେରିଆସୁ ବୋଲି କବି ଉଜ୍ଜ୍ୱଳ ଆଶା ପୋଷଣ କରିଛନ୍ତି । ଭାରତର ପବିତ୍ର ମଧୁମୟ ବାତାବରଣ ଖେଳଯାଉ, ଏହା ହିଁ କବିଙ୍କର କାମନା । ତେଣୁ କବିତାର

ଶେଷାଂଶରେ ବୈଦ୍ଧିକ ଭାବାପନ୍ନ କାମନା ପୋଷଣ କରି ଲେଖିଛନ୍ତି—

"ଭାରତ ପ୍ରଭାବେ ହେଉ ସାର୍ଥ ଋଷିବାଣୀ,
ମଧୁମୟ ଭାବେ ମତ୍ତ ହେଉ ବିଶ୍ୱପ୍ରାଣୀ ।
ସର୍ବସିନ୍ଧୁ ସ୍ରୋତେ କ୍ଷରୁ ମଧୁମୟ ନୀର,
ବହୁ ମଧୁମୟ ଗନ୍ଧ ଶୀତଳ ସମୀର ।
ମଧୁମୟ ରସେ ପୁଷ୍ଟହେଉ ବନସ୍ପତି,
ମଧୁମୟ ରଙ୍ଗେ ଶୋଭୁ ସର୍ବ ବସୁମତୀ ।
ହେଉ ମଧୁମୟ ଉଷା ପ୍ରଦୋଷ ରଜନୀ,
ନଭେ ଦେଶ ମଧୁମୟ ରବି ଦିନମଣି ।
ମଧୁମୟ ରୀତେ ହେଉ ବିଶ୍ୱ ନିନାଦିତ,
ଉଠୁ ବିଶ୍ୱପ୍ରାଣେ ମଧୁ ଅମୃତ-ସଙ୍ଗୀତ ।"

ଗୋପବନ୍ଧୁଙ୍କର କବିତାର ଯେ କୌଣସି ଅଂଶରେ ଦେଶପ୍ରେମର ଉଜ୍ଜ୍ୱଳ ଆଦର୍ଶର ଛବି ଦେଖା ଯାଇଥାଏ । ବନ୍ଦୀର ବିରହ ବ୍ୟଥା କବିତାରେ କବି ତାଙ୍କର ପ୍ରିୟଜନମାନଙ୍କର ବିରହ ବ୍ୟଥାରେ ଦୁଃଖ ପ୍ରକାଶ କରିଛନ୍ତି । ସଂସାରରେ ପ୍ରଣୟ-ପୀୟୂଷ ସହିତ ବିରହ-ବିଷର ମିଶ୍ରଣ କବିଙ୍କ ଅନ୍ତରରେ ଦୁଃଖ ଜାତ କରିଅଛି । କାରାଗାରର ପ୍ରାଙ୍ଗଣରେ ସନ୍ଧ୍ୟା ସମୟରେ ବିଚରଣ କରିବାବେଳେ କବିଙ୍କ ହୃଦୟରେ ପ୍ରିୟଜନମାନଙ୍କର ସ୍ମୃତି ଜାଗରୁକ ହୋଇଅଛି । ସନ୍ଧ୍ୟା ହୋଇଯିବାରୁ କବି କାରାଗାର ମଧ୍ୟକୁ ଫେରି ଯାଇଅଛନ୍ତି । ବନ୍ଦୀର ସାନ୍ଧ୍ୟଭକ୍ତି କବିତାରେ କବି ଇତିହାସର କେତେକ କଥା ଉଲ୍ଲେଖ କରି ଅନ୍ୟାୟ ସାମ୍ରାଜ୍ୟ-ବାଦର ପତନ ବିଷୟ ବର୍ଣ୍ଣନା କରିଛନ୍ତି । ସୂର୍ଯ୍ୟାସ୍ତ ସମୟରେ

କବି ସୂର୍ଯ୍ୟଦେବଙ୍କୁ ପ୍ରଣିପାତ କରି କାରାଗାରକୁ ଫେରି ଯାଇଛନ୍ତି ।

ବନ୍ଦୀର ସ୍ୱଦେଶ ଚିନ୍ତା ଉତ୍କଳମଣି ଗୋପବନ୍ଧୁଙ୍କ ଲେଖନୀର ଏକ ଅନବଦ୍ୟ ଦାନ । କବି ବନ୍ଦୀଶାଳା ମଧ୍ୟରେ ଆବଦ୍ଧ ରହି ବସନ୍ତର ଆଗମନ ସମୟରେ ବାହାରର ବିଶ୍ୱକୁ ମନେ ପକାଇଛନ୍ତି । ମଳୟର ପ୍ରବାହକୁ କବି ମନଶ୍ଚକ୍ଷୁରେ ଦେଖି ମଳୟର ଗତିପଥର ବର୍ଣ୍ଣନା ପ୍ରଦାନ କରିଅଛନ୍ତି । ମଳୟ ଦକ୍ଷିଣ ଦିଗରୁ ପ୍ରବାହିତ ହେବା ସମୟରେ ପଥମଧ୍ୟରେ ଯେଉଁ ଯେଉଁ ସ୍ଥାନ ପଡ଼ିବାର କଥା ସେ ସ୍ଥାନଗୁଡ଼ିକର ବର୍ଣ୍ଣନା କବିଙ୍କ ଲେଖନୀରେ ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଅଛି । ଏପରି ବର୍ଣ୍ଣନାଲାଗି କବିଙ୍କ ଉପରେ କାଳିଦାସଙ୍କର ପ୍ରସିଦ୍ଧ ମେଘଦୂତର ଛାୟା ପଡ଼ିଅଛି ବୋଲି ନିଃସନ୍ଦେହରେ କୁହାଯାଇପାରେ । ଏହି କବିତାରୁ ଗୋପବନ୍ଧୁଙ୍କର ପ୍ରକୃତି ପ୍ରେମ-ପ୍ରବଣତାର ଯଥେଷ୍ଟ ପରିଚୟ ମିଳେ ।

ବନ୍ଦୀଶାଳାରେ କବି ବସନ୍ତର ଆଗମନରେ ମଳୟର ପ୍ରବାହ ଲକ୍ଷ୍ୟ କରିଛନ୍ତି । ଏହି ଅବସରରେ ତାଙ୍କର ତରୁଣ ବୟସର ସ୍ମୃତି ମନେ ପଡ଼ିଛି । ତରୁଣ ବୟସରେ କବି ଭାର୍ଗବୀ ତୀରରେ ବସନ୍ତ ସମୟରେ ବୁଲିବାର କଥା ଲେଖିଛନ୍ତି । ଭାର୍ଗବୀର ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନାରେ କବି ଲେଖିଛନ୍ତି—

"କ୍ଷୀଣ ତୋୟା ନୀରେ ଖେଳେ ଧୀରେ ଧୀରେ
ସୁମଞ୍ଜୁଳା ଲଘୁ ଲହରୀମାଳା,
ଦକ୍ଷିଣ ଦିଗକୁ କୁଞ୍ଚିତ କୁନ୍ତଳ
ମେଲିଛ ଦେଇଛି କି ପଲ୍ଲିବାଳା ।"

ସନ୍ଧ୍ୟା ସମୟରେ ପଲ୍ଲୀର ଉପାନ୍ତରେ ଯେଉଁ ସବୁ ଦୃଶ୍ୟ ଦେଖାଯାଏ ସେସବୁକୁ କବି ଦକ୍ଷତାର ସହିତ ବର୍ଣ୍ଣନା କରିଛନ୍ତି । ତାପରେ କବିଙ୍କ ମନରେ ନିଜ ଘର କଥା ମନେ ପଡ଼ିଯାଇଅଛି । ଦୂର ବନ୍ଦୀଶାଳାରେ ଘରକଥା ମନେପକାଇ ମନରେ ବୃଥା ଦୁଃଖ ଆଣିବାକୁ କବି ଉଚିତ ମନେକରି ନାହାନ୍ତି । ଦକ୍ଷିଣା ପବନକୁ ସମ୍ବୋଧନ କରି ଦକ୍ଷିଣଦିଗର ସମାଚାର ପାଇବା ପାଇଁ କବି ଇଚ୍ଛା କରିଛନ୍ତି । ଏହି ଅବସରରେ କବି ଦକ୍ଷିଣ ଓଡ଼ିଶାର ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା କରିଛନ୍ତି । ମଳୟର ପବନ ଚିଲିକା-ପଥରେ ବହି ଆସିବା ସମୟରେ କବି ଲେଖିଛନ୍ତି—

"ଆଲିଙ୍ଗନ ଆଶେ ତବ ପଥପାଶେ
ଚିଲିକା ଆବେଗେ ଥିବ ଅନାଇଁ,
ମୁକ୍ତ ନୀଳକେଶୀ ଶ୍ୟାମ ଶୋଭାରାଶି-
ଗିରି ଶିରିସ୍ଫୀତ ବକ୍ଷ ମେଲାଇ ।"

ତା ପରେ ପୁରୀକ୍ଷେତ୍ରର ବର୍ଣ୍ଣନାରେ କବି ଶ୍ରୀଜଗନ୍ନାଥଙ୍କ ପ୍ରସଙ୍ଗରେ ଯାହା କିଛି ଉଲ୍ଲେଖ କରିଛନ୍ତି, ତାହା ତାଙ୍କର ବିଭୁପ୍ରେମର ପରାକାଷ୍ଠା ପ୍ରଦର୍ଶନ କରେ । କବି ନିଜର ପ୍ରିୟସ୍ଥଳୀ ସତ୍ୟବାଦୀର ବର୍ଣ୍ଣନା ଅତ୍ୟନ୍ତ ମଞ୍ଜୁଳ ଭାବରେ ପ୍ରଦାନ କରିଛନ୍ତି । ଗୋପୀନାଥଙ୍କ ପ୍ରସଙ୍ଗରେ କବି ଏକ ହୃଦ୍ୟବର୍ଣ୍ଣନା କରି ସାରିବା ପରେ ନିଜର ପ୍ରିୟ ଆଶ୍ରମ ବିଷୟରେ ଲେଖିଛନ୍ତି—

"ବସନ୍ତ ମାଧୁରୀ କୁଞ୍ଜେ କୁଞ୍ଜେ ପୂରି
ପଡୁଥିବ ଯହିଁ ଉଚ୍ଛଳ ସତେ,
ଦେବଦତ୍ତ ଧାମ ମୋ ପ୍ରିୟ ଆଶ୍ରମ
ପଡୁଛି କି ତବ ନୟନ ପଥେ ?

ମୋ ସଖା ସୋଦର ପ୍ରିୟ ପରିକର
ଅନ୍ତେବାସୀ ବନ୍ଧୁ ପଡ଼ୋଶୀଗଣ,
ଛନ୍ତି ତ କୁଶଳେ ବିରହ ବିକଳେ
ବିବଶ ବିଷଣ୍ଣ ନୁହେ ବଦନ ?

ଉତ୍କଳର ଅତୀତ ବିଭବର ଧ୍ୱଂସସ୍ତୂପ ଦେଖି ମଳୟ ନିଶ୍ଚୟ ସନ୍ତ୍ରସ୍ତ ହୋଇଥିବ । ଖଣ୍ଡଗିରି ଗାତରେ ଥିବା ବହୁ ଚିତ୍ର କବିଙ୍କର କଳ୍ପନା ନେତ୍ରରେ ଦେଖା ଦେଇଅଛି । ଖଣ୍ଡଗିରି ପରେ ମଳୟ କଟକ ନଗରୀକୁ ପ୍ରବେଶ କରିଛି । ବାରବାଟୀ ଦୁର୍ଗର ଭଗ୍ନସ୍ତୂପ ଦେଖି ସମୀର ଦୁଃଖ ପାଇଥିବ । ବାରବାଟୀର ଅତୀତ ଗୌରବ କବିଙ୍କ ଲେଖନୀରେ ରୂପାୟିତ ହୋଇଅଛି । କଟକ ଛାଡ଼ି ମଳୟର ଗତି ଉତ୍ତର ଦିଗକୁ ହୋଇଛି । ସମ୍ବଲପୁର ଓ କେତେକ ଗଡ଼ଜାତ କଥା କବି ବର୍ଣ୍ଣନା କରିଛନ୍ତି । ଏହି କବିତାଟିର ସମଗ୍ର ବର୍ଣ୍ଣନା ମଧ୍ୟରେ କବିଙ୍କର ବିଶେଷତ୍ୱ ପରିଲକ୍ଷିତ ହୁଏ । କବି ଅତୀତ ଉତ୍କଳର ଗୌରବ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବର୍ତ୍ତମାନର ପତନ ପାଇଁ ଦୁଃଖ ପ୍ରକାଶ କରିଛନ୍ତି । କବିଙ୍କର ବର୍ଣ୍ଣନା ମଧ୍ୟରେ କବି-ପ୍ରାଣର ମଞ୍ଜୁଳତା ବିଶେଷ ଭାବରେ ଉପଲବ୍ଧି କରିବାର କଥା । ଅନେକ ସ୍ଥଳରେ ବର୍ଣ୍ଣନାର ରୋମାଣ୍ଟିକ୍ ପରିବେଶ ପାଠକକୁ ମୁଗ୍‌ଧ କରେ । ସତ୍ୟବାଦୀର ଗୋପୀନାଥ ଓ କଟକର ବାରବାଟୀ ଦୁର୍ଗ ପ୍ରସଙ୍ଗରେ କବିଙ୍କର ରୋମାଣ୍ଟିକ୍ କଳ୍ପନା ବାସ୍ତବିକ ହୃଦୟସ୍ପର୍ଶୀ । ସତ୍ୟବାଦୀର ଗୋପୀନାଥ ମନ୍ଦିର ନିକଟକୁ ମଳୟ ଯେତେବେଳେ ଆସିଛି, ସେତେବେଳେ କବି ଲେଖିଛନ୍ତି—

"ଦେଉଳେ ପ୍ରବେଶି ଗୋପୀନାଥ ବଂଶୀ
ରନ୍ଧ୍ରେ ରଚିଥିବ ଅସ୍ଫୁଟ ସ୍ୱନ

ରାଧିକା ଅଞ୍ଚଳ ଉଡ଼ାଇ ଚଞ୍ଚଳ
କରିଥିବ, ଜାଣି ବେଣୁଙ୍କ ମନ ।"

ଠିକ୍ ସେହିପରି ବାରବାଟୀ ଦୁର୍ଗ ପ୍ରସଙ୍ଗରେ କବି ଲେଖିଛନ୍ତି, ଅତୀତରେ ଯେତେବେଳେ କୌଣସି ଯୁଦ୍ଧଯାତ୍ରା ଉଦ୍ଦେଶ୍ୟରେ ଉତ୍କଳର ନରପତି ଦୁର୍ଗରୁ ମେଲାଣି ନେଉଥିଲେ, ସେତେବେଳେ ରାଜମହିଷୀଙ୍କର ଅବସ୍ଥା ଲକ୍ଷ୍ୟ କରିବାର କଥା । ସେ ଲେଖିଛନ୍ତି—

"ଥିଲ ଦିନ ଯେବେ ନବତିଳ ହର୍ମ୍ୟେ
ଯୁଦ୍ଧଯାତ୍ରୀ ରାଜା ମେଲାଣି କାଳେ,
ଆଣି ନଦୀ ନୀର ସିଞ୍ଚିଲ ସମୀର
ସ୍ୱେଦବିନ୍ଦୁଯୁକ୍ତ ମହିଷୀ ଭାଲେ ।
ସ୍ନେହ-ସୁଧାବିନ୍ଦୁ ଯେତେ ମୁଖ ଇନ୍ଦୁ
ମଣ୍ଡିଲି ପ୍ରସରି ନେତ୍ର ଯୁଗଳେ,
ବାନ୍ଧି ସୁଶୀତଳେ ହରିଲି କୌଶଳେ
ନ ପକାଇ ମୁକ୍ତା ଫଳକ ତଳେ ।"

କବିଙ୍କର କଳ୍ପନା ଶକ୍ତିର ମଞ୍ଜୁଳତା ଏଥିରେ ଲକ୍ଷଣୀୟ । ଗୋପବନ୍ଧୁଙ୍କର କବିତ୍ୱ ଶକ୍ତିର ଲାଳିତ୍ୟ ଏହି କବିତାଟିକୁ ହୃଦୟଗ୍ରାହୀ କରିଅଛି ।

ବନ୍ଦୀର ସନ୍ଧ୍ୟା-ଭାବନା କବିତାରେ କବି ବନ୍ଦୀଶାଳାରେ ଥାଇ ଦୂରରେ ଥିବା ଉତ୍କଳର ବିଭିନ୍ନ ସ୍ଥାନରେ ସନ୍ଧ୍ୟା ସମୟର ଦୃଶ୍ୟ ଓ ପରିସ୍ଥିତିକୁ କଳ୍ପନା ନେତ୍ରରେ ଦେଖିଅଛନ୍ତି । କବିଙ୍କର ଶିକ୍ଷାଗୁରୁ ପୁରୀବାସୀ ସ୍ୱର୍ଗୀୟ ହରିହର ମିଶ୍ରଙ୍କ ପରଲୋକ-

ପ୍ରାପ୍ତି ସମ୍ବାଦ ପାଇ "କାରାରେ ଜଣେ ବନ୍ଧୁଙ୍କ ବିୟୋଗବାର୍ତ୍ତା ଶୁଣିବାପରେ" ନାମରେ ଏକ କବିତା ସେ ଲେଖିଛନ୍ତି । ଏଥିରେ କବି ତାଙ୍କର ବ୍ୟକ୍ତିଗତ ଜୀବନର ସମ୍ପର୍କ ବିଷୟରେ ବର୍ଣ୍ଣନାକରି ସ୍ୱର୍ଗତ ବ୍ୟକ୍ତିଙ୍କର ମହତ୍ତ୍ୱର ପରିଚୟ ପ୍ରଦାନ କରିଅଛନ୍ତି ।

'ଦେଖାଦିଅ ବାରେ', 'ପ୍ରେମର କି ଏହି ପରିଣାମ' ନାମରେ ଦୁଇଗୋଟି କବିତା କାରା-କବିତାରେ ସ୍ଥାନ ପାଇଅଛି । ମାତ୍ର ଏ କବିତା ଦୁଇଗୋଟି କବି ଗୋପବନ୍ଧୁଙ୍କର ପ୍ରକୃଷ୍ଟ ପରିଚୟ ଦେବାକୁ ଅସମର୍ଥ । ବିଶ୍ୱର ମିଳନ ଚିହ୍ନ ଏହି କବିତା-ସଙ୍କଳନର ଶେଷ କବିତା । ଏଥିରେ କବି ବିଶ୍ୱର ପ୍ରତ୍ୟେକ ସ୍ତରରେ ମିଳନର ଚିହ୍ନ ଦେଖିବାର ବର୍ଣ୍ଣନା କରିଛନ୍ତି । କବିଙ୍କର ନିଜ ଜୀବନରେ ପ୍ରେମର ମିଳନ ଅସମ୍ଭବ । ତେଣୁ ସେ ପରମେଶ୍ୱରଙ୍କ ସହିତ ମିଳିତ ହେବାପାଇଁ ଇଚ୍ଛା ପ୍ରକାଶ କରିଅଛନ୍ତି । ପରମେଶ୍ୱରଙ୍କ ସହିତ ତାଙ୍କର ମିଳନ ହେଲେ ତାଙ୍କ ହୃଦୟରେ ବିଶ୍ୱପ୍ରେମ ଭାବଧାରା ଜାତ ହେବ । କବି ସେହି ବିଶ୍ୱ ପ୍ରେମରେ ନିଜର ପୂର୍ଣ୍ଣତା ଉପଲବ୍‌ଧି କରିବାର ବାସନା ପୋଷଣ କରି ଅଛନ୍ତି ।

## ବନ୍ଦୀର ଆତ୍ମକଥା :—

ଉକ୍ତ ପୁସ୍ତକଟି ଗୋପବନ୍ଧୁ ବନ୍ଦୀଶାଳାରେ ଥିବା ସମୟରେ ରଚିତ । କବି ହଜାରିବାଗ ଜେଲ୍‌ଖାନାକୁ ଯିବା ସମୟରେ ପଥ ମଧ୍ୟରେ ତାଙ୍କ ମନରେ ବହୁ ଭାବନା ଜାତ ହୋଇଥିଲା । ସେହିସବୁ ଭାବନାର ରୂପାୟନ ଏହି କବିତାରେ କରାଯାଇଅଛି । ଅସହଯୋଗ ଆନ୍ଦୋଳନରେ ଭାଗନେଇ ଦେଶକୁ ନେତୃତ୍ୱ ଦେବା ସମୟରେ କବି ବନ୍ଦୀ ହେଲେ । ତେଣୁ ବନ୍ଦୀଶାଳାରେ ଥାଇ କବି

ଦେଶ ବିଷୟରେ ବିଶେଷ ଭାବରେ ଚିନ୍ତା କରିଅଛନ୍ତି । କବି ଅତୀତ ଉତ୍କଳର ଅବସ୍ଥା ଓ ତତ୍କାଳୀନ ଉତ୍କଳର ଅବସ୍ଥା ବିଷୟରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । କବିଙ୍କର କାରାଦଣ୍ଡ ବାର୍ତ୍ତା ପାଇ ଦେଶବାସୀ କାତର ହେବା କଥା ଲେଖି ପ୍ରକାଶ କରିଛନ୍ତି ଯେ, ତାଙ୍କର ଏ କାରାଦଣ୍ଡ ଆକସ୍ମିକ ନୁହେଁ । ଏହା ଆଗରୁ ଜଣାଶୁଣା କଥା । ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ ତତ୍କାଳୀନ ସରକାରଙ୍କ ବିଷଦୃଷ୍ଟିରେ ପଡ଼ିବାର କଥା । ତଥାପି ଏଥିରେ ଧୈର୍ଯ୍ୟହରା ନ ହୋଇ ଅହିଂସା ସଂଗ୍ରାମରେ ଲାଗିପଡ଼ିବା ଦେଶବାସୀଙ୍କର କର୍ତ୍ତବ୍ୟ । ଏଥିପାଇଁ କାରାଦଣ୍ଡ ଭୋଗିବାକୁ ପଡ଼ିପାରେ । ସେଥିପାଇଁ ଭୟଭୀତ ହେବା ଦେଶବାସୀଙ୍କ ପକ୍ଷରେ ଉଚିତ ନୁହେଁ । ଦେଶର ମୁକ୍ତିଲାଗି ନିଜର ଜୀବନକୁ ଉତ୍ସର୍ଗ କରିଥିବା ଗୋପବନ୍ଧୁ ଲେଖିଛନ୍ତି—

"ଏଥିରେ ପ୍ରଥମ ଫଳ କାରାଦଣ୍ଡ,
ପଛେ ହୋଇପାରେ ଦେହ ଖଣ୍ଡ ଖଣ୍ଡ;
ବୁଝି ଏହା ମୁହିଁ ପଶିଛି ସଂଗ୍ରାମେ
ନାହିଁ ମୋ ବିଚାର ମାନ ଅପମାନେ ।
ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା-ପଥେ ଭଲେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁ-ମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।"

ଦେଶର ମୁକ୍ତି ପାଇଁ କବିଙ୍କ ହୃଦୟରେ ଯେଉଁ ଅପୂର୍ବ ଉନ୍ମାଦନା ଜାଗି ଉଠିଥିଲା, ତାହା କବିତାର ଏହି ଉଦ୍ଧୃତାଂଶରୁ ପ୍ରମାଣିତ ହୋଇଅଛି । ଦେଶପାଇଁ, ଜାତିପାଇଁ ପ୍ରାଣପାତ କଲେ ମାନବଜନ୍ମ ସଫଳ ହୁଏ । ଉତ୍କଳର ଜନସାଧାରଣ ଏହି ମହାଦୀକ୍ଷା ବୁଝିବାପାଇଁ କବି ଆହ୍ୱାନ ଜଣାଇଛନ୍ତି । ଇଂରେଜ ରାଜତ୍ୱ ସମୟରେ ଦେଶବାସୀ ଅଭାବ ଅନାଟନ ମଧ୍ୟରେ ଗତି କରୁଥିଲେ । ପ୍ରଜାମାନଙ୍କର ସୁଖ-ସ୍ୱାଚ୍ଛନ୍ଦ୍ୟ ପ୍ରତି ଶାସକବର୍ଗଙ୍କର ଆଦୌ ଦୃଷ୍ଟି ନ ଥିଲା । ଇଂରେଜ ସରକାରଙ୍କର ଏହି ନୀତି ବିରୁଦ୍ଧରେ କବି ମତ ପ୍ରଦାନ କରିବାକୁ ଯାଇ ଲେଖିଛନ୍ତି—

"ରହିବ ନାହିଁ ଏ ନୀତି କାଳେ କାଳେ,
ନାଶଯିବ ସତ୍ୟ-ନ୍ୟାୟ-କରବାଳେ ।

+ + +

ଡରାଇ ଶାସିବା ନୀତି ଭାଙ୍ଗିଯିବ
ପ୍ରଜାଙ୍କ ମତରେ ଶାସନ ଚଳିବ ।
ଏହି ନବଯୁଗ ଆଣିବା ସକାଶେ,
ଗାନ୍ଧି ରହିଛନ୍ତି ସିନା କାରାବାସେ ।
ଭାରତର କେତେ କେତେ ମହାଜନ
ବନ୍ଦୀଶାଳେ ଏବେ କାଟନ୍ତି ଜୀବନ ।
ମୁଁ ଅତି ସାମାନ୍ୟ ତାଙ୍କ ଅନୁଚର,
ତୁମ ଅକିଞ୍ଚନ ଆତ୍ମୀୟ ସୋଦର ।"

ସ୍ୱାଧୀନତା ପାଇବା ପାଇଁ ବିଦେଶୀ ଦ୍ରବ୍ୟ ବର୍ଜନ କରି ସ୍ୱଦେଶୀ ଦ୍ରବ୍ୟର ପ୍ରସାର କରିବା ନିମିତ୍ତ କବି ଉଦ୍‌ବୋଧନ

ଦେଇଅଛନ୍ତି । ନିଜ ନିଜ ମଧ୍ୟରେ ଭେଦଭାବ ଭୁଲି ସମଗ୍ର ଦେଶବାସୀ ଏକତା ମନ୍ତ୍ରରେ ଦୀକ୍ଷିତ ହେଲେ ନୀଳାଚଳନାଥ ନିଶ୍ଚୟ ଦେଶବାସୀଙ୍କର ଆଶାପୂରଣ କରିବେ । ଉତ୍କଳର ଅତୀତ ଐତିହ୍ୟ ଯାହାଥାଉନା କାହିଁକି ବର୍ତ୍ତମାନ ଉତ୍କଳ ନିତାନ୍ତ ଅସହାୟ । ମହାତ୍ମାଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନର ଆହ୍ୱାନ ଉତ୍କଳ-ବାସୀଙ୍କୁ ନୂତନ ମନ୍ତ୍ରରେ ଦୀକ୍ଷିତ କରିଅଛି । ଏହା ଦେଶ ପକ୍ଷରେ ଶୁଭଙ୍କରର ସଙ୍କେତ । ଉତ୍କଳର ବୀରତ୍ୱ ସୁବିଦିତ । ଉତ୍କଳର ଦେବତା ଜଗନ୍ନାଥ ବଳରାମ ଘୋଡ଼ାଚଢ଼ି କାଞ୍ଚି ଯୁଦ୍ଧରେ ପୁରୁଷୋତ୍ତମଦେବଙ୍କୁ ସାହାଯ୍ୟ କରିବାପାଇଁ ଯାଇଥିଲେ । ମାଣିକ ପାଟଣା ଗ୍ରାମ ଆଜି ତାର ସାକ୍ଷ୍ୟ ପ୍ରଦାନ କରେ । ମାତ୍ର ଆଜି ଉତ୍କଳ ଦୁର୍ବଳ । ଉତ୍କଳୀୟର ଧର୍ମବଳ ବଢ଼ିଲେ ଉତ୍କଳ ଜାଗି ଉଠିବ ।

ଅସହଯୋଗ ଆନ୍ଦୋଳନରେ ନେତୃତ୍ୱ ଦେଉଥିବା ଯୋଗୁଁ ଗୋପବନ୍ଧୁଙ୍କୁ ବନ୍ଦୀ କରାଯାଇ ଗୁପ୍ତ ସମୟରେ ଓଡ଼ିଶାଠାରୁ ଦୂରକୁ ନିଆଯାଇଥିଲା । ଓଡ଼ିଶା ଭିତରେ ବନ୍ଦୀଶାଳାରେ ତାଙ୍କୁ ରଖିଲେ ପରୋକ୍ଷ ଭାବରେ ଦେଶବାସୀଙ୍କ ଉପରେ ତାଙ୍କର ପ୍ରଭାବ ପଡ଼ିପାରେ । ତେଣୁ ସମସ୍ତଙ୍କ ଅଜ୍ଞାତସାରରେ ତାଙ୍କୁ ଓଡ଼ିଶା ବାହାରକୁ ପଠାଇ ଦିଆଗଲା । ବନ୍ଧୁଙ୍କର ବନ୍ଦୀହେବାର ବାର୍ତ୍ତା ଦେଶବାସୀଙ୍କୁ ବିଚଳିତ ନ କରୁ । ଏଥିପାଇଁ ସେ ଦେଶବାସୀଙ୍କୁ ଆହ୍ୱାନ ଜଣାଇ ଲେଖିଛନ୍ତି—

"ହେ ଉତ୍କଳବାସୀ ଆତ୍ମୀୟ ସ୍ୱଜନ !
ମୁଁ ଯେବେ ତୁମ୍ଭର ସେନେହ ଭାଜନ ।
କରଯୋଡ଼ି କରେ ବିନତି ଏତିକି,
ଅସହଯୋଗରେ ରଖିବ ମତିକି ।

ତାଳଦ୍ୱଅ ପ୍ରାଣ ସ୍ୱରାଜ ସାଧନେ
ଆଶ୍ୱାସିବ ଯେବେ ମୋତେ ନବାସନେ ।"

ଭାରତବର୍ଷକୁ ଇଂରେଜ ଶାସନର କବଳରୁ ମୁକ୍ତ କରିବାପାଇଁ ମହାତ୍ମାଗାନ୍ଧୀଙ୍କର ଅପୂର୍ବ ତ୍ୟାଗ ବିଷୟରେ କବି ଦେଶବାସୀଙ୍କୁ ବୁଝାଇଛନ୍ତି । ମହାତ୍ମାଗାନ୍ଧୀ ତାଙ୍କର କ୍ଷୀଣକାୟ ସ୍ୱାସ୍ଥ୍ୟରେ ସବୁ ତ୍ୟାଗ କରି କେତେକଷ୍ଟ ସହିଛନ୍ତି । ମହାତ୍ମାମାନଙ୍କର ସାଧନା, କଷ୍ଟବରଣ କେବେହେଲେ ଅକାରଣ ହୁଏ ନାହିଁ । ସମଗ୍ର ଦେଶବାସୀ ତାଙ୍କର ନିର୍ଦ୍ଦେଶ ମାନି ସ୍ୱାଧୀନତା-ଲାଭ ପଥରେ ଅଗ୍ରସର ହେବା ଉଚିତ । ବନ୍ଦୀ ଅବସ୍ଥାରେ ରେଳରେ ବସି ଯିବା ସମୟରେ କବି ଜେନାପୁର ନିକଟରେ କେତେକ ଅଘଟିତ କଥା ସ୍ମରଣ କରିଛନ୍ତି । ଜେନାପୁରକୁ ରିଲିଫ୍ ବାଣ୍ଟିବାପାଇଁ ଆସି କବି ଯେପରି ଅବସ୍ଥା ଅବଲୋକନ କରିଥିଲେ ତାହା ବର୍ଣ୍ଣନା କରିଛନ୍ତି । କେବଳ ଜେନାପୁରର ନୁହେଁ, ପଥମଧ୍ୟରେ ଯେଉଁ ସ୍ଥାନ କବି ଦେଖିଛନ୍ତି ସେ ସ୍ଥାନ ବିଷୟରେ କେତେକ ବର୍ଣ୍ଣନା ପ୍ରଦାନ କରିଛନ୍ତି । ଦେଶବାସୀଙ୍କୁ ସ୍ୱାଧୀନତା ମନ୍ତ୍ରରେ ଦୀକ୍ଷିତ ହେବାପାଇଁ କବି ଆହ୍ୱାନ କରି ଗ୍ରାମ ଶାସନର ମୂଳଦୁଆ ସ୍ଥାପନ କରିବାପାଇଁ ଦେଶବାସୀଙ୍କୁ ନିର୍ଦ୍ଦେଶ ଦେଇ ଅଛନ୍ତି । ସ୍ୱାଧୀନତାର ସ୍ୱପ୍ନରେ କବି କବିତାଟିକୁ ସମାପ୍ତ କରିବା ପୂର୍ବରୁ ଲେଖିଛନ୍ତି—

"କରୁଣା କଟାକ୍ଷ ଗୃହାନ୍ତୁ ସେ ବାରେ,
ବାଜିବ ସ୍ୱରାଜ୍ୟ-ଶଙ୍ଖ ସିଂହଦ୍ୱାରେ ।
ଉଡ଼ିବ ଅମ୍ବରେ ସ୍ୱରାଜ୍ୟ-କେତନ,
ପ୍ରତିଷ୍ଠିତ ହେବ ସ୍ୱରାଜ୍ୟ ଶାସନ ।"

ଦେବ ପ୍ରତିଷ୍ଠିତ ମହର୍ଷିସମ୍ମତ
ଜାଣିବ ଭାରତ, ଦେଖିବ ଜଗତ ।
ବିରାଜିବ ବିଶ୍ୱେ ଏକତା ସମତା,
ଶାନ୍ତି ଢାଳିବେ ସ୍ୱରଗେ ଦେବତା ।

## ଧର୍ମପଦ—

ଧର୍ମପଦରେ କବି ଗୋପବନ୍ଧୁ କୋଣାର୍କ ମନ୍ଦିର ନିର୍ମାଣ ସମ୍ପର୍କରେ ପ୍ରଚଳିତ କିମ୍ବଦନ୍ତୀ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ଅଛନ୍ତି । ଏହି କିମ୍ବଦନ୍ତୀର କଥାବସ୍ତୁକୁ ଗ୍ରହଣ କରି ଗୋପବନ୍ଧୁ ଧର୍ମପଦ ରଚନା କରିବା ପରେ ନାଟ୍ୟଭାରତୀ ଅଶ୍ୱିନୀକୁମାର ଘୋଷ ମଧ୍ୟ କୋଣାର୍କ ନାଟକ ରଚନା କରିଅଛନ୍ତି । ଧର୍ମପଦର ବୈଶିଷ୍ଟ୍ୟ ପ୍ରତିପାଦନ କରିବାକୁ ଯାଇ କବି ଓଡ଼ିଆ ଜାତିର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଛନ୍ତି । ଓଡ଼ିଶାର ଶିଳ୍ପୀକୁଳଙ୍କର ଅସାଧାରଣ ପ୍ରତିଭା ସର୍ବଜନବନ୍ଦିତ । ତଥାପି ଧର୍ମପଦର ମନ୍ଦିର ଚୂଡ଼ାମାରିବା ଉପାଖ୍ୟାନରୁ ଜଣାଯାଏ, ସତେ ଯେପରି ସେ ଦୈବୀଶକ୍ତି ସମ୍ପନ୍ନ । କବି ଦେଶାତ୍ମବୋଧ ଭାବଧାରାର ସଙ୍କେତ ପ୍ରଦାନ କରିବାପାଇଁ ଏହି କାବ୍ୟକୁ ରଚନା କରିଥିଲେ । ଏହା କବିବର ରାଧାନାଥଙ୍କର ଚନ୍ଦ୍ରଭାଗା କାବ୍ୟର ଏକ ମୌନ ପ୍ରତିବାଦ ରୂପେ ଗୃହୀତ ହୋଇପାରେ ।

## ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ:—

କଠୋପନିଷଦ ବର୍ଣ୍ଣିତ ନଚିକେତାଙ୍କର ଆଦର୍ଶମୟ ଜୀବନର କାହାଣୀ ଏହି ପୁସ୍ତକରେ ଲେଖା ଯାଇଅଛି । ଋଷି ଉଦ୍ଦାଳକଙ୍କ ବଂଶରେ ବାଜଶ୍ରବାଙ୍କର ଜନ୍ମ । ବାଜଶ୍ରବା ସ୍ୱର୍ଗଲାଭ ଆଶାରେ

ବିଶ୍ୱଜିତ ଯଜ୍ଞ କରିଥିଲେ । ତାଙ୍କର ପୁତ୍ରଙ୍କ ନାମ ନଚିକେତା । ପୁଣ୍ୟ ଅର୍ଜନ ଉଦ୍ଦେଶ୍ୟରେ ବାଜଶ୍ରବା ବୃଦ୍ଧଗାଈ ଦାନ କରିବା ସମୟରେ ନଚିକେତା ଅତ୍ୟନ୍ତ ବ୍ୟଥିତ ହୋଇଥିଲେ । ସେ ପିତାଙ୍କୁ ପ୍ରଶ୍ନ କରିଥିଲେ, "ମୋତେ କାହାକୁ ଦାନ ଦେବେ ?" ଉତ୍ତରରେ କ୍ରୁଦ୍ଧ ପିତା କହିଥିଲେ, "ତୋତେ ଏହିକ୍ଷଣି ଯମକୁ ଦେବି ।" ଏଥିରେ ନଚିକେତା କ୍ଷୁବ୍ଧ ହେଲେ ନାହିଁ । ମାତ୍ର କୋପଶାନ୍ତ ହେବା ପରେ ନଚିକେତାଙ୍କୁ ଏପରି କହିଥିବା ଯୋଗୁଁ ବାଜଶ୍ରବା ଦୁଃଖ ପ୍ରକାଶ କଲେ । ସେ ଯାହାହେଉନା କାହିଁକି ନଚିକେତା ପିତୃବାକ୍ୟ ଅନୁସାରେ ଯମପୁରକୁ ଗଲେ । ସେଠାରେ ଯମ ନ ଥିଲେ, ସ୍ଥାନାନ୍ତରକୁ ଯାଇଥିଲେ । ଯମ ଆସିବା ପର୍ଯ୍ୟନ୍ତ ନଚିକେତା ତିନିଦିନ ତିନିରାତି ଅପେକ୍ଷା କଲେ । ଯମ ଆସିବାପରେ ନଚିକେତାଙ୍କୁ କହିଲେ ଯେ ତାଙ୍କ ସତ୍କାରରେ ହେଳା ହୋଇଅଛି । ତିନିଦିନର ଅପେକ୍ଷା ଲାଗି ସେ ଯମଙ୍କୁ ତିନିଗୋଟି ବର ମାଗି ପାରନ୍ତି । ନଚିକେତା ଯମଙ୍କ କଥା ଅନୁସାରେ ତିନିଗୋଟି ବର ମାଗିଲେ ଯେ, ତାଙ୍କ ବିଚ୍ଛେଦ ଦୁଃଖରେ ତାଙ୍କ ପିତା ଦୁଃଖିତ ନ ହୁଅନ୍ତୁ । ସେ ଯମପୁରରୁ ଫେରିବା ପରେ ତାଙ୍କ ପିତା ତାଙ୍କୁ ଚିହ୍ନି ପାରନ୍ତୁ । ଏହା ପ୍ରଥମ ବରଭିକ୍ଷା । ଯମ ଏହି ବରପ୍ରଦାନ କଲେ । ଦ୍ୱିତୀୟ ବରରେ ନଚିକେତା ଅଗ୍ନିର ଗମ୍ଭୀରତତ୍ତ୍ୱ ଜିଜ୍ଞାସା କଲେ । ଯମ ଦ୍ୱିତୀୟ ବରରେ ସ୍ୱର୍ଗ-ସିଦ୍ଧିଦାତା ଅଗ୍ନିଙ୍କର ନିଗୂଢ଼ ବୃତ୍ତାନ୍ତ ନଚିକେତାଙ୍କ ସମ୍ମୁଖରେ ପ୍ରକାଶ କଲେ । ତୃତୀୟ ବର ରୂପେ ନଚିକେତା ଯମଙ୍କୁ ପରଲୋକ-ତତ୍ତ୍ୱ ବିଷୟରେ ପ୍ରଶ୍ନ କଲେ । ଯମ ତାଙ୍କୁ ଏଥିରୁ ନିବୃତ୍ତ ହେବାକୁ ପ୍ରବର୍ତ୍ତାଇଲେ । ମାତ୍ର ନଚିକେତା ଏଥିରେ ଅଟଳ ରହିଲେ । ଶେଷରେ ନଚିକେତା ପରଲୋକ-ତତ୍ତ୍ୱ ବା ବ୍ରହ୍ମତତ୍ତ୍ୱ ଶିକ୍ଷା କରି ସ୍ୱର୍ଗରୁ ଫେରିଲେ ।

ନଚିକେତାଙ୍କର ଜୀବନର ଆଦର୍ଶ ବିଷୟକୁ କବି ସୁନ୍ଦର ଭାବରେ ଚିତ୍ରଣ କରିଅଛନ୍ତି । ଉପନିଷଦର କଠିନ ବ୍ରହ୍ମତତ୍ତ୍ୱକୁ ସରଳ ଓ ହୃଦୟଗ୍ରାହୀ ଭାବରେ ବର୍ଣ୍ଣନା କରିବା କବିଙ୍କର ବୈଶିଷ୍ଟ୍ୟ ।

**ଗୋ-ମାହାତ୍ମ୍ୟ :—**

ଆମ ଦେଶରେ ଗୋରୁପୂଜା ଅତି ପ୍ରାଚୀନକାଳରୁ ଚଳି ଆସିଅଛି । ଗୋଜାତିର ଉନ୍ନତି ବିଧାନ ପାଇଁ କବି ଏହି ଗ୍ରନ୍ଥଟିକୁ ରଚନା କରିଅଛନ୍ତି । ଏହାକୁ ସାଧାରଣ ସ୍ତରରେ ବୋଧଗମ୍ୟ କରାଇବା ନିମନ୍ତେ କବି ଅତ୍ୟନ୍ତ ସରଳ ଭାଷା ପ୍ରୟୋଗ କରି ଅଛନ୍ତି । ଓଡ଼ିଶାରେ ଭାଗବତର ନବାକ୍ଷରୀ ବୃତ୍ତ ଲୋକପ୍ରିୟତା ଲାଭ କରିଥିବାରୁ କବି ଏହାକୁ ନବାକ୍ଷରୀ ବୃତ୍ତରେ ରଚନା କରି ଅଛନ୍ତି ।

ଗୋପବନ୍ଧୁଙ୍କର ଗଦ୍ୟଶୈଳୀର ପ୍ରାଧାନ୍ୟ ମଧ୍ୟ ଲକ୍ଷ୍ୟ କରିବାର କଥା । ସତ୍ୟବାଦୀ ପତ୍ରିକାରେ ସେ ଅନେକ ପ୍ରବନ୍ଧ ଲେଖିଥିଲେ । ସେଗୁଡ଼ିକ ଏ ପର୍ଯ୍ୟନ୍ତ ସଂଗୃହୀତ ହୋଇ ନାହିଁ । ଏହି ପ୍ରବନ୍ଧଗୁଡ଼ିକରେ ତାଙ୍କର ଗଦ୍ୟରଚନାର ଭଙ୍ଗୀ ବିଷୟରେ ଏତିକି କୁହାଯାଇ ପାରେ ଯେ ତାଙ୍କର ଶୈଳୀ ଏକାନ୍ତ ଭାବରେ ଓଡ଼ିଆର ନିଜସ୍ୱ । ସତ୍ୟବାଦୀଗୋଷ୍ଠୀର ସାହିତ୍ୟ ସାଧକମାନଙ୍କ ମଧ୍ୟରେ ଗୋପବନ୍ଧୁଙ୍କୁ ମୁଖ୍ୟତଃ କବି ଭାବରେ ଗ୍ରହଣ କରାଯାଇ ଅଛି ।

**(ଘ) ଗୋପବନ୍ଧୁ-ସାହିତ୍ୟରେ ସ୍ୱଦେଶ ପ୍ରୀତି:—**

ଗୋପବନ୍ଧୁଙ୍କ ରଚନାର ଯେ କୌଣସି ପରିସରରେ ତାଙ୍କ ଦେଶପ୍ରେମର ବହୁ ଉଦାହରଣ ଦେଖାଯାଏ । ଗୋପବନ୍ଧୁଙ୍କର

ପ୍ରଥମ ଲକ୍ଷ୍ୟ ଦେଶସେବା । ଦେଶ ଓ ଜାତିର ଉନ୍ନତି ପାଇଁ ସେ ସାହିତ୍ୟର ଉନ୍ନତିରେ ମନପ୍ରାଣ ଢାଳି ଦେଇଥିଲେ । ରାଧାନାଥ-ଯୁଗର ସାହିତ୍ୟ ସୃଷ୍ଟି ମଧ୍ୟରେ ଦେଶପ୍ରେମର ବହୁ ଉଦାହରଣ ଦେଖାଯାଏ । ମାତ୍ର ସେ ସମୟର ଜାତୀୟତାର ଦୃଷ୍ଟିକୋଣ ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟ ସାଧକମାନଙ୍କର ସାହିତ୍ୟ ସାଧନା କରିବା ସମୟକୁ ପରିବର୍ତ୍ତିତ ହୋଇ ଯାଇଅଛି । ରାଧାନାଥଙ୍କ ସମୟରେ ଏ ଦେଶରେ ଇଂରେଜ ଶାସନ ଥିଲା, ଗୋପବନ୍ଧୁଙ୍କ ସମୟରେ ମଧ୍ୟ ଇଂରେଜ ଶାସନ ଥିଲା । ମାତ୍ର ସମୟର ଗତିପଥ ଅବସ୍ଥା ଭେଦରେ ଭିନ୍ନ ପରିସ୍ଥିତିର ସୃଷ୍ଟି କରିଅଛି । ୧୯୦୩ ସାଲରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠିତ ହେବା ପରେ ଓଡ଼ିଶାର ରାଜନୈତିକ ପରିସ୍ଥିତିରେ ବହୁ ପରିବର୍ତ୍ତନ ଦେଖା ଦେଇଅଛି । ସକ୍ରିୟ ରାଜନୀତିରେ ଅଂଶ ଗ୍ରହଣ କରିଥିବା ବହୁ ଦେଶପ୍ରେମୀଙ୍କ ଲେଖନୀରୁ ଏହି ସମୟରେ ଯେଉଁ ପ୍ରକାର ଜାତୀୟବାଦୀ ସାହିତ୍ୟ ସୃଷ୍ଟି ହୋଇଅଛି ତାହାର ସ୍ୱାତନ୍ତ୍ର୍ୟ ରହିବାର କଥା । ଓଡ଼ିଶାର ଅବନତି ସେ ସମୟର ବହୁ ଦେଶପ୍ରେମୀଙ୍କ ଅନ୍ତରରେ ବ୍ୟଥା ଜାତ କରିଛି । ଗୋପବନ୍ଧୁଙ୍କର ବନ୍ଦୀର ଆତ୍ମକଥାରେ ଏହାର ବହୁ ପ୍ରମାଣ ମିଳିଅଛି । ସତ୍ୟବାଦୀକୁ କେନ୍ଦ୍ର କରି ଓଡ଼ିଶାର ଜାତୀୟ ଜୀବନର ସ୍ୱତନ୍ତ୍ର ରୂପରେଖ ଓଡ଼ିଶାରେ ନବଯୁଗର ସୂତ୍ରପାତ କରିଥିଲା । ଏହି ନବଯୁଗର କର୍ଣ୍ଣଧାର ଥିଲେ ପଣ୍ଡିତ ଗୋପବନ୍ଧୁ ।

ବନ୍ଦୀର ସ୍ୱଦେଶ ଚିନ୍ତା କବିତାରେ କବି ମଳୟର ଗତିପଥର କଥା ବର୍ଣ୍ଣନା କରିବାକୁ ଯାଇ ପୁରୀ, ସତ୍ୟବାଦୀ, ଖଣ୍ଡଗିରି, କଟକର ବାରବାଟୀ ପ୍ରଭୃତି ପ୍ରସଙ୍ଗରେ ଯାହା ବର୍ଣ୍ଣନା

କରି ଅଛନ୍ତି, ତାହା ତାଙ୍କର ଉଜ୍ଜ୍ୱଳ ଦେଶପ୍ରେମର ପରିଚୟ ପ୍ରଦାନ କରେ । ଅତୀତର ସେ ଗୌରବ ଆଜି ବିଲୁପ୍ତ । କବି ଏଥିପାଇଁ ଦୁଃଖ ପ୍ରକାଶ କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ କ୍ଷେତ୍ରରେ ବିଭୁ-ପଦାରବିନ୍ଦରେ ପ୍ରାର୍ଥନା କରିଛନ୍ତି ଯେ ପୁଣି ସେ ଦିନ ଫେରିଆସୁ ।

କେବଳ ଅତୀତର ଗୌରବମୟ ଘଟଣାର ଉଲ୍ଲେଖ କରି କବି ଦୁଃଖ ପ୍ରକାଶ କରି ରହିଯାଇ ନାହାନ୍ତି । ଦେଶ ପ୍ରେମ ମୂଳକ କବିତାରେ ସାଧାରଣତଃ କବିମାନେ ଅତୀତର ଗୌରବମୟ ଘଟଣା ବର୍ଣ୍ଣନା କରି ସେ ସବୁର ଅଭାବ ପାଇଁ ଦୁଃଖ ପ୍ରକାଶ କରନ୍ତି ଓ ଶେଷରେ ଭଗବାନଙ୍କ ନିକଟରେ ପୂର୍ବ-ଗୌରବର ପୁନରୁତ୍‌ଥାନ ପାଇଁ ପ୍ରାର୍ଥନା କରିଥାନ୍ତି । ମାତ୍ର ଗୋପବନ୍ଧୁଙ୍କ ପକ୍ଷରେ କେବଳ ଏତିକରେ ଦେଶପ୍ରେମମୂଳକ କବିତା ରଚନାର ସୀମା ନିର୍ଦ୍ଧାରିତ ନୁହେଁ । ସେ ତାଙ୍କର ରଚନାର ବହୁଅଂଶରେ ପ୍ରତ୍ୟକ୍ଷ କର୍ମପନ୍ଥା ଗ୍ରହଣ ଲାଗି ଜାତିକୁ ଆହ୍ୱାନ ଜଣାଇଛନ୍ତି । ବନ୍ଦୀର ଆତ୍ମକଥାରେ ଏ ଭଳି ବହୁ ଦୃଷ୍ଟାନ୍ତ ପୂରିରହିଛି । ଅସହଯୋଗ ଆନ୍ଦୋଳନରେ ନେତୃତ୍ୱ ଦେବା ସମୟରେ ଯେତେବେଳେ ଗୋପବନ୍ଧୁଙ୍କୁ ବନ୍ଦୀ କରା-ଯାଇଥିଲା, ସେତେବେଳେ ବନ୍ଦୀଶାଳାରେ ଥାଇ ମଧ୍ୟ ସେ ଦେଶ ବିଷୟରେ ଚିନ୍ତା କରୁଥିଲେ । ସେହି ବନ୍ଦୀଶାଳାରେ ଥିବା ସମୟରେ ସେ ଲେଖିଛନ୍ତି—

"ହେ ଉତ୍କଳବାସୀ ମୋ ଭାଇ ଭଉଣୀ,
ମୋ ଦଣ୍ଡ-ବାରତା ସର୍ବେ ଥିବ ଶୁଣି ।
ଶୁଣି କି ହେ ମନେ କରିଛ ଶୋଚନା ?
ଶୋଚନା କାହିଁପା ? ଏ ମୋ କର୍ମ ରଚନା ।

କହୁଥିଲ ପର ବୁଲି ଗ୍ରାମ ଗ୍ରାମ,
'ଦେଶପାଇଁ ଦଶପାଇଁ କରକାମ'
ମିଳେ ଯଦି କାହା ଭାଗ୍ୟେ କାରାବାସ,
କାର ନୁହଇ ସେ ପବିତ୍ର ପ୍ରଭାସ ।"

ଦେଶକାମର ପବିତ୍ରତା କବିଙ୍କ ମନରେ ସବୁବେଳେ ପୂରି ରହିଥିଲା । ଦେଶ ସେବାରେ ଯଦି ପ୍ରାଣପାତ ହୁଏ ତେବେ ମନୁଷ୍ୟର ଜନ୍ମ ସଫଳ ହୁଏ । ସେ ଲେଖିଛନ୍ତି—

"ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ ।
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ,
ମାନବ-ଜନମ ହୁଅଇ ସଫଳ
ଏ ମହାକାଂକ୍ଷା କି ବୁଝିବ ଉତ୍କଳ ?"

କର୍ମ କରିବାର ପ୍ରବୃତ୍ତି କେବଳ ସଚ୍ଚୋଟ କର୍ମୀଠାରେ ସମ୍ଭବ । ଗୋପବନ୍ଧୁଙ୍କର କର୍ମତତ୍ପରତା ସୁବିଦିତ । ଜାତିକୁ ନେତୃତ୍ୱ ଦେବାର ଯୋଗ୍ୟତା କେବଳ ସେ ସମୟରେ ଗୋପବନ୍ଧୁଙ୍କର ଥିଲା । ଦେଶର ସ୍ୱାଧୀନତା ପାଇଁ ତାଙ୍କର ପିପାସା ଥିଲା ଅଦମ୍ୟ । ସେଥିଲାଗି ଲେଖିଅଛନ୍ତି—

"ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି
ଛରି ସ୍ତମ୍ଭେ ମାନବର ସମାଜ ସଂସ୍ଥିତି ।

ଭାରତେ ଆମାତ୍ୟ ସଂସ୍ଥା ରାଜନୀତି ଆଜ
ଓପାଡ଼ି ଏ ଗୃହସ୍ତମ୍ଭ ଭାଙ୍ଗିଛି ସମାଜ ।
ଦେବଭୂମି କର୍ମଭୂମି ଧର୍ମଭୂମି ସାର
ଭାରତରେ ନାହିଁ ନରଜନ୍ମ ଅଧିକାର ।
ଆର୍ଯ୍ୟଋଷି ପ୍ରତିଷ୍ଠିତ ପବିତ୍ର ଭାରତ
ନିସ୍ତେଜ ନିଷ୍ପ୍ରଭ ଧ୍ୟାନ ପର ପଦାନତ ।
ଦେଖି ଏ ଦୁର୍ଗତି ମୋର ପିତୃ ପିତାମହ
ଅନ୍ତରୀକ୍ଷେ ଦେବଗଣ ଋଷିଗଣ ସହ
ଥିକଲେ କାନ୍ଦନ୍ତି, ମୋର ହୃଦେ ଏ ପ୍ରଶ୍ନତି,
ମାନବ ଉପରେ କେବେ ଏ ଶାସନ ନୀତି ?

ଏହିପରି ବହୁ ପଂକ୍ତି ମଧ୍ୟରେ ଉତ୍କଳମଣି ଗୋପବନ୍ଧୁଙ୍କର ସ୍ୱଦେଶ ପ୍ରୀତିର ପରିଚୟ ମିଳିଅଛି । ଗୋପବନ୍ଧୁଙ୍କର ଦେଶ ପ୍ରେମର ତୁଳନା ନାହିଁ । ଓଡ଼ିଆ ସାହିତ୍ୟରେ ଜାତୀୟତାଭାବର ପ୍ରକୃଷ୍ଟ ପରିପ୍ରକାଶ ଗୋପବନ୍ଧୁଙ୍କ ଦ୍ୱାରା ହିଁ ସମ୍ଭବ ହୋଇ ଅଛି ।

## (୪) ଗୋପବନ୍ଧୁ-ସାହିତ୍ୟରେ ପ୍ରକୃତି :—

ଗୋପବନ୍ଧୁଙ୍କର ବିଭିନ୍ନ ରଚନା ମଧ୍ୟରେ ଉତ୍କଳର ପ୍ରକୃତି ବହୁ ରୂପରେ ଆତ୍ମପ୍ରକାଶ କରିଅଛି । ଆଧୁନିକ ଓଡ଼ିଆ ସାହିତ୍ୟରେ କବିବର ରାଧାନାଥ ପ୍ରକୃତିକୁ ଏକ ନବୀନ ଶ୍ରୀରେ ମଣ୍ଡିତ କରିବାପରେ ରାଧାନାଥଙ୍କର ସମସାମୟିକ ତଥା ପରବର୍ତ୍ତୀ ବହୁ କବି ରାଧାନାଥଙ୍କର ପଦାଙ୍କ ଅନୁସରଣ କରିଅଛନ୍ତି । ଗୋପବନ୍ଧୁ ସାହିତ୍ୟରେ ପ୍ରକୃତିର ବହିର୍ରୂପ ସହିତ ଅନ୍ତର୍ରୂପର ମଧ୍ୟ ପ୍ରକାଶ

ହୋଇଅଛି । ବନ୍ଦୀର ବିରହ ବ୍ୟଥା କବିତାରେ ସେ ଲେଖିଛନ୍ତି—

"ଅସ୍ତାଚଳ ଉଚ୍ଚ ଆସନେ ବସି ହସନ୍ତ ରବି,
ପ୍ରାଚୀ ଅନୁରାଗେ ରଞ୍ଜିତ ଗୁରୁ ବଦନ-ଛବି
ପ୍ରାଚୀ ଅଭିମୁଖେ ଲମ୍ବାଇ ସ୍ନିଗ୍ଧ କନକ କର,
କୋମଳ ଆଶ୍ୱାସେ ଦେଖାନ୍ତି ନିଜ ସ୍ନେହ ଆଦର ।"

କବି ଗୋପବନ୍ଧୁ ଯେତେବେଳେ ମାନସିକ ଦୁଶ୍ଚିନ୍ତାରେ ପଡ଼ନ୍ତି ସେତେବେଳେ ପ୍ରକୃତିର ଶାନ୍ତିମୟ କୋଳରେ ଆନନ୍ଦର ଉତ୍ସ ଖୋଜି ବସନ୍ତି । ହଜାରିବାଗ୍ ଜେଲରେ ବନ୍ଦୀଥିବା ସମୟରେ ଗୋଧୂଳି ଲଗ୍ନର ମାଧୁରୀ, ଭାର୍ଗବୀ ତୀରର ସାୟଂକାଳୀନ ଦୃଶ୍ୟ କବିଙ୍କ ମାନସ ପଟରେ ଉଦ୍ଭାସିତ ହୋଇ ଉଠିଛି । ପ୍ରକୃତି ପ୍ରତି ତାଙ୍କର ପ୍ରୀତି ନ ଥିଲେ ଏ ପରି ଭାବ ଆସିବା ହୁଏତ ସହଜ ହୋଇ ନ ଥାନ୍ତା । ବନ୍ଦୀଜୀବନର ନିଷ୍ଠୁର ପରିବେଶରୁ ମୁକ୍ତି ପାଇବାପାଇଁ କବି ପ୍ରକୃତିକୁ ଉପଭୋଗ କରିବାପାଇଁ ବିଶେଷ ଇଚ୍ଛା ପୋଷଣ କରି ଲେଖିଛନ୍ତି—

"ବିଶ୍ୱ ପ୍ରକୃତିରେ ଦେଖିଲେ ସମହୃଦ ବେଦନା
ତାପିତ ଅନ୍ତରେ ଆସିବ ଅବା କ୍ଷଣେ ସାନ୍ତ୍ୱନା ।
ରହ ଆଜ ଦଣ୍ଡେ ସିପାହୀ କମା କର କଠୋର
କକ୍ଷେ ଅବରୋଧ ସମୟ ପରି ଗୋଧୂଳି କାଳ ।
ଦେଖି ରକ୍ତ ରକ୍ତ ହୁଅଇ ରବି ଏବେ ଗଗନେ
ଆଜ ଟିକିଏ ମୁଁ ବୁଲିବି ଏଥି କାରା ପ୍ରାଙ୍ଗଣେ ।"

ପ୍ରକୃତିର ଅନବଦ୍ୟ ରୂପମାଧୁର୍ଯ୍ୟରେ କବିଙ୍କର କି ପ୍ରକାର ମମତା ଥିଲା ତାହା ଏହି ଉଦ୍ଧୃତାଂଶରୁ ସ୍ପଷ୍ଟଭାବରେ ଜଣାଯାଏ । ପୁଣି ପ୍ରକୃତିର ପ୍ରଶାନ୍ତ ମାଧୁର୍ଯ୍ୟ କିପରି ସମସ୍ତଙ୍କୁ ସମାନ ଭାବରେ ମିଳିଥାଏ ସେ କଥା କବି ବନ୍ଦୀର ସ୍ୱଦେଶ ଚିନ୍ତାରେ ପ୍ରକାଶ କରିଅଛନ୍ତି । ବନ୍ଦୀଶାଳାରେ ଆବଦ୍ଧଥିବା ସମୟରେ କବି ଲେଖିଛନ୍ତି—

"ନର ପ୍ରତି ନର କରେ ଅବିଚାର
ପ୍ରକୃତି ସକଳେ ଦେଖେ ସମାନ,
ହେ ମଳୟାନିଳ ସୁଗନ୍ଧି ଶୀତଳ
ପ୍ରବାହେ ପରଶ ମୋ ଦଗ୍‌ଧ ପ୍ରାଣ ।"

କବିଙ୍କର ସମଗ୍ର ରଚନା ମଧ୍ୟରେ ପ୍ରକୃତିର ଚିତ୍ରଣ ଯେପରି ମନୋରମ ସେହିପରି ହୃଦ୍ୟ ହୋଇଅଛି । ପ୍ରକୃତି କବିଙ୍କ ପକ୍ଷରେ ଶିକ୍ଷାଦାତ୍ରୀ, ଶାନ୍ତିର ଆଧାର ଓ ମନୋରମ ପରିବେଶ ଭାବରେ ଦେଖା ଦେଇଅଛି । କବିଙ୍କର ପ୍ରକୃତି ପ୍ରେମିକତା ଯେ କୌଣସି ପାଠକର ଅନ୍ତରକୁ ସ୍ପର୍ଶ କରିବାର କଥା । ସତ୍ୟବାଦୀ ଗୋଷ୍ଠୀର କବିମାନଙ୍କ ନିକଟରେ ପ୍ରକୃତି ସାବଳୀଳ । ପ୍ରକୃତିର ଶାନ୍ତିମୟ କୋଳ କବିମାନଙ୍କର ଶାନ୍ତିର ସ୍ଥଳ ରୂପେ ଚିତ୍ରିତ ।

ବନ୍ଦୀର ସ୍ୱଦେଶ ଚିନ୍ତା ମୁଖ୍ୟତଃ ପ୍ରକୃତି ଆଧାରିତ କବିତା । ଏହି କବିତାର ପ୍ରତ୍ୟେକ ପଦରେ ପ୍ରକୃତିର ମାଧୁର୍ଯ୍ୟ ପ୍ରକାଶିତ । ମଳୟ ଦକ୍ଷିଣ ଦିଗରୁ ପ୍ରବାହିତ ହେବା ସମୟରେ ପଥ ମଧ୍ୟରେ ଚିଲିକା ହ୍ରଦକୁ ସ୍ପର୍ଶକରି ଆସିଥିବ । ସେ ପ୍ରସଙ୍ଗରେ କବି ଲେଖିଛନ୍ତି—

"ଆଲିଙ୍ଗନ ଆସେ ତବ ପଥପାଶେ
ଚଳକା ଆବେଗେ ଥିବ ଅନାଇଁ,
ମୁକ୍ତ ନୀଳକେଶୀ ଶ୍ୟାମ ଶୋଭାବତୀ—
ଗିରି-ଶିଖସ୍ଫୀତ ବକ୍ଷ ମେଲାଇ ।
ଚଞ୍ଚଳ ହିଲ୍ଲୋଳେ ଝୁରୁ ଖଣ୍ଡସ୍ଥଳେ
ଚୁମ୍ବିଥିବ ଯେବେ ଗାଢ଼େ ସମୀର,
ସୁନ୍ଦରୀ ସର୍ବାଙ୍ଗେ ଉଠିଥିବ ରଙ୍ଗେ
ଅପୂର୍ବ ଉଲ୍ଲାସ କମ୍ପାଇ ନୀର ।
ପୁଲିନ କାନନେ ସ୍ନିଗ୍ଧ ସନସନେ
ଖେଳଯାଇଥିବ ପ୍ରେମ ଲହରୀ,
ହଲି ଯାଇଥିବ କେତେ କେତେ ନାବ
ଦେଖୁଥିବ ଖଣ୍ଡଦୂରେ ସୋଲର ।"

କବିଙ୍କର କଳ୍ପନା ଚକ୍ଷୁରେ ପ୍ରକୃତିର ଏହିପ୍ରକାର ଝୁରୁଚନ୍ଦ ଖେଳଯାଇଅଛି । କବିଙ୍କର କଳ୍ପନା ବିଳାସ ପ୍ରକୃତିର ମାଧୁରୀକୁ ଉପଭୋଗ କରିବାପାଇଁ ଯଥେଷ୍ଟ ଉପାଦାନ ଯୋଗାଇ ଅଛି । ଗୋପବନ୍ଧୁଙ୍କ ସାହିତ୍ୟସୃଷ୍ଟି ମଧ୍ୟରେ ପ୍ରକୃତି ଅନବଦ୍ୟ ଶ୍ରୀରେ ମଣ୍ଡିତ ହୋଇଅଛି ।

## ( ୬ ) ଗୋପବନ୍ଧୁ-ସାହିତ୍ୟର ଆଦର୍ଶ :—

ସାହିତ୍ୟ କେବଳ ଜନସାଧାରଣଙ୍କର ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା ମାନବସମାଜକୁ ଶିକ୍ଷା ଦାନ କରିବା ନିମିତ୍ତ ବିଶେଷ ଭାବରେ ଉଦ୍ଦିଷ୍ଟ । ଗୋଟିଏ ଜାତିର ସାରସତ୍ତା ମାପି ବସିବାକୁ ହେଲେ ତାର ସାହିତ୍ୟକୁ ଅନୁଶୀଳନ କରିବାକୁ

ପଡ଼ିଥାଏ । ଓଡ଼ିଆ ସାହିତ୍ୟରେ ରାଧାନାଥଯୁଗରେ ଏକ ବଳିଷ୍ଠ ଆଦର୍ଶର ଅନୁସରଣ ପ୍ରାୟ ଅଧିକାଂଶ କବିଙ୍କ ପକ୍ଷରେ ସମ୍ଭବପର ହୋଇଥିଲା । ତଥାପି ସତ୍ୟବାଦୀଗୋଷ୍ଠୀର ସାହିତ୍ୟସାଧକମାନଙ୍କ ଚକ୍ଷୁରେ ରାଧାନାଥ ଯୁଗରେ ଅନୁସୃତ ହୋଇଥିବା ଆଦର୍ଶ ଉପଯୁକ୍ତ ବିବେଚିତ ହୋଇପାରିଲା ନାହିଁ । ବିଦେଶୀ ଶାସନ ସମୟରେ ଦେଶବାସୀଙ୍କୁ ସ୍ୱଦେଶର ପ୍ରକୃଷ୍ଟ ଆଦର୍ଶରେ ଅନୁପ୍ରାଣିତ କରିବା କବି ଓ ଲେଖକମାନଙ୍କର ଏକ ପ୍ରଧାନ କର୍ତ୍ତବ୍ୟ ବୋଲି ସେ ସମୟରେ ବିବେଚିତ ହେଲା । ତେଣୁ ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟିକଗଣ ଆମର ଦେଶର ଐତିହ୍ୟକୁ ବଜାୟ ରଖିବା ପାଇଁ ଚେଷ୍ଟିତ ହେଲେ । ଏହି ଦୃଷ୍ଟିରୁ ଗୋପବନ୍ଧୁଙ୍କ ଲେଖନୀରୁ ଗୋ-ମାହାତ୍ମ୍ୟ, ନଚିକେତା ଉପାଖ୍ୟାନ, ଧର୍ମପଦ, କାରାକବିତା, ବନ୍ଦୀର ସ୍ୱଦେଶ ଚିନ୍ତା, ନୀଳକଣ୍ଠଙ୍କ ଲେଖନୀରୁ ଖାରବେଳ, କୋଣାର୍କେ, ଓଡ଼ିଆ ସାହିତ୍ୟର କ୍ରମପରିଣାମ, ଗୀତାର ମୁଖବନ୍ଧ, ଗୋଦାବରୀଶଙ୍କ ଲେଖନୀରୁ ଆଲେଖିକା, କବିଗଳପ୍ପ ପ୍ରଭୃତି ଆତ୍ମପ୍ରକାଶ କଲା । ଦେଶବାସୀଙ୍କ ମନରେ ଦେଶପ୍ରେମର ଉଜ୍ଜ୍ୱଳ ଚିତ୍ର ଅଙ୍କନ କରିବା ଏହି ସମୟର ସାହିତ୍ୟିକମାନଙ୍କର ଉଦ୍ଦେଶ୍ୟ ଥିଲା । କାବ୍ୟ କବିତାର କଥାବସ୍ତୁ ଯେଉଁଠାରୁ ନିଆଯାଇ ଥାଉନା କାହିଁକି ପ୍ରସଙ୍ଗୋଚିତ ଭାବରେ ଦେଶପ୍ରେମ ଭାବଧାରାର ଚିତ୍ର ପ୍ରତ୍ୟେକ କାବ୍ୟ ବା କବିତାରେ ପରିବେଷିତ ହୋଇଅଛି ।

ଗୋପବନ୍ଧୁଙ୍କର ଦେଶପ୍ରେମର ଉଜ୍ଜ୍ୱଳ ଆଦର୍ଶ, ତ୍ୟାଗପୂତ ଜୀବନର ଉଜ୍ଜ୍ୱଳ ଆଦର୍ଶ, ସେବାମନୋଭାବର ଉଜ୍ଜ୍ୱଳ ଆଦର୍ଶ ଏ ଦେଶରେ ଅବିସ୍ମରଣୀୟ । ତାଙ୍କ ଜୀବନର ଆଦର୍ଶ ତାଙ୍କ ସାହିତ୍ୟରେ ପ୍ରତିବିମ୍ବିତ ହୋଇ ଉଠିଅଛି । ଅନ୍ୟାୟ

ଅତ୍ୟାଗ୍ଭର ବିରୁଦ୍ଧରେ କବି ସବୁବେଳେ ପ୍ରତିବାଦ କରିଅଛନ୍ତି । ସାମ୍ବାଦିକତା କ୍ଷେତ୍ରରେ ତତ୍କାଳୀନ ଇଂରେଜ ସରକାରଙ୍କ ଶାସନ କ୍ଷେତ୍ରରେ ଘଟିଥିବା ଅନ୍ୟାୟର ଦୃଢ ପ୍ରତିବାଦ ସେ କରିଛନ୍ତି । ସେଥିପାଇଁ ତାଙ୍କୁ ବହୁବାର ଦଣ୍ଡିତ ହେବାକୁ ପଡ଼ିଅଛି । ତଥାପି ସତ୍ୟାଗ୍ରହୀ ଭାବରେ ସେ ତାଙ୍କର ମତରେ ଅଟଳ ରହିଛନ୍ତି ।

ଆମ ଦେଶରେ ପ୍ରଚଳିତ ଥିବା ବହୁ କିମ୍ବଦନ୍ତୀକୁ ସେ ସତ୍ୟରୂପରେ ଗ୍ରହଣ କରିନେଇଛନ୍ତି । କିମ୍ବଦନ୍ତୀର ଐତିହାସିକ ସତ୍ୟତା ନାହିଁ । ତଥାପି ସେଗୁଡ଼ିକ ମାନବସମାଜକୁ ଶିକ୍ଷାଦାନ କରିବାକୁ ସମର୍ଥ ବୋଲି କବି ସେଗୁଡ଼ିକୁ ଗ୍ରହଣ କରିନେଇଛନ୍ତି । ସାକ୍ଷୀଗୋପାଳ, କାଞ୍ଚି ଅଭିଯାନ ପ୍ରଭୃତି ଏହିପ୍ରକାର ଅନେକ କିମ୍ବଦନ୍ତୀକୁ କବି ସତ୍ୟମୂଳକ ଘଟଣା ଭାବରେ ଗ୍ରହଣ କରି ନେଇଅଛନ୍ତି ।

ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନର ଆଦର୍ଶ ତାଙ୍କ ସାହିତ୍ୟରେ ଅବିକଳ ପ୍ରତିବିମ୍ବିତ । ତାଙ୍କର ନିର୍ଭୀକତା ଏହାର ଜ୍ୱଳନ୍ତ ପ୍ରମାଣ ।

## ( ୭ ) ଗୋପବନ୍ଧୁ-ସାହିତ୍ୟରେ ଚରିତ୍ର ଚିତ୍ରଣ :—

ଗୋପବନ୍ଧୁଙ୍କର ଅଧିକାଂଶ କବିତା ତାଙ୍କର ଅନୁଭୂତି ଓ ନିଜସ୍ୱ ଭାବନାକୁ କେନ୍ଦ୍ର କରି ରଚିତ । ଏହିସବୁ କବିତା ଗୁଡ଼ିକରେ ସେ ନିର୍ଭୀକ ଭାବରେ ସତ୍ୟତାର ପ୍ରକାଶ କରିଛନ୍ତି । ତାଙ୍କର ନଚିକେତା ଉପାଖ୍ୟାନ ଓ ଧର୍ମପଦରେ ଚରିତ୍ର ଚିତ୍ରଣର ଚମତ୍କାରିତା ପ୍ରଦର୍ଶନ କରିବାର ଅବକାଶ ନାହିଁ । ନଚିକେତା

ଉପାଖ୍ୟାନରେ ଋଷିକୁମାର ନଚିକେତାଙ୍କର ସ୍ୱାଭାବିକତା ରକ୍ଷା କରାଯାଇଅଛି । ପିତୃସତ୍ୟ ପାଳନ କରି ନଚିକେତା ଯମପୁରକୁ ଗମନ କରି ନିଜର ଅପୂର୍ବ ଶକ୍ତି ବଳରେ ଯାହା ଲାଭ କରିଛନ୍ତି ତାହା ଆଦର୍ଶମୂଳକ ହୋଇପାରେ । କଠୋପନିଷଦର ବ୍ରହ୍ମତତ୍ତ୍ୱର ସରଳ ପ୍ରକାଶ ହୋଇଥିବାରୁ ନଚିକେତା ଉପାଖ୍ୟାନର ସ୍ୱାତନ୍ତ୍ର୍ୟ ଗୋପବନ୍ଧୁଙ୍କ ଦ୍ୱାରା ପରିବର୍ତ୍ତିତ ହୋଇ ପାରିନାହିଁ ।

ଧର୍ମପଦ କାବ୍ୟରେ ଠିକ୍ ସେହିପରି ଘଟିଛି । ଲୋକ ପ୍ରଚଳିତ କିମ୍ବଦନ୍ତୀକୁ କବି କାବ୍ୟରୂପ ପ୍ରଦାନ କରିଅଛନ୍ତି । ଧର୍ମପଦର ଆତ୍ମନିଷ୍ଠା, ତ୍ୟାଗପୂତ ଜୀବନରେ ଆଦର୍ଶ କବିଙ୍କ ଲେଖନୀରେ ପ୍ରକାଶ ପାଇଅଛି ସତ, ମାତ୍ର ଧର୍ମପଦର ଚରିତ୍ର ବୈଚିତ୍ର୍ୟ ସମ୍ପନ୍ନ ହୋଇଅଛି । ତେଣୁ ଆଦର୍ଶ ପ୍ରଚାର ଉଦ୍ଦେଶ୍ୟରେ କବି ଯେଉଁ ଚରିତ୍ରମାନଙ୍କର ଅବତାରଣା କରି ଅଛନ୍ତି ସେମାନଙ୍କର ସ୍ୱାଭାବିକତା ସେହି ଆଦର୍ଶ ମଧ୍ୟରେ ରକ୍ଷିତ ହୋଇଅଛି ।

ରାଧାନାଥଯୁଗରେ ବିଦେଶୀ କଥାବସ୍ତୁର ଉପସ୍ଥାପନରେ ବିଦେଶୀ ଚରିତ୍ର ଏ ଦେଶରେ ଆଦର୍ଶହୀନ ଭାବରେ ଦେଖା ଦେଇଥିଲା । ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟ-ସାଧକଗଣ ଏହା ବିରୁଦ୍ଧରେ ତୀବ୍ର ମତପୋଷଣ କରିଥିଲେ । ତେଣୁ ସେମାନଙ୍କ ସାହିତ୍ୟ ସୃଷ୍ଟିରେ ଆଦର୍ଶମୂଳକ ଚରିତ୍ର ଉପସ୍ଥାପନରେ ଆଦର୍ଶ-ମୂଳକ ଜାତୀୟ ପରିବେଷଣ ଦେଖା ଦେଇଥିଲା । କବି ଗୋପବନ୍ଧୁଙ୍କ ସାହିତ୍ୟ ସୃଷ୍ଟିରେ ଆଦର୍ଶମୂଳକ ବାତାବରଣ ମଧ୍ୟରେ ଆଦର୍ଶ-ଚରିତ୍ର ସୃଷ୍ଟି ହୋଇଅଛି ।

ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟ ସାଧକମାନଙ୍କ ମଧ୍ୟରେ ପଣ୍ଡିତ ନୀଳକଣ୍ଠ ଓ ଗୋଦାବରୀଶଙ୍କ କାବ୍ୟ-କବିତାରେ ଉନ୍ନତ ଚରିତ୍ର ଜରିଆରେ ଉନ୍ନତ ପ୍ରେମ ଦେଖା ଦେଇଅଛି । ଉନ୍ନତ ପ୍ରେମଚିତ୍ର ଅଙ୍କନ କରିବା ଉଦ୍ଦେଶ୍ୟରେ ପଣ୍ଡିତ ନୀଳକଣ୍ଠ କୋଣାର୍କେ କାବ୍ୟରେ ମାଯ୍ସାଦେବୀ ଓ ଖାରବେଳରେ ଧୂଣୀ ଚରିତ୍ର ଚିତ୍ରଣ କରି ଅଛନ୍ତି । ଗୋଦାବରୀଶ ତାଙ୍କର ଗୀତି କବିତାଗୁଡ଼ିକରେ ଓ ଗଳ୍ପ ଉପନ୍ୟାସଗୁଡ଼ିକରେ ଆଦର୍ଶ ସତ୍ତ୍ୱେ ଚରିତ୍ର ଚିତ୍ରଣରେ ସ୍ୱାଭାବିକତା ରକ୍ଷା କରିଅଛନ୍ତି ।

## ( ୭ ) ଗୋପବନ୍ଧୁ-ସାହିତ୍ୟରେ ଆଧ୍ୟାତ୍ମିକତା—

ଅବକାଶ ଚିନ୍ତାର ମୁଖବନ୍ଧରେ ଶ୍ରୀଯୁକ୍ତ ରାଧାନାଥ ରଥ ଲେଖିଛନ୍ତି, "ଈଶ୍ୱର-ଭକ୍ତ ଗୋପବନ୍ଧୁଙ୍କ ସକଳ କାର୍ଯ୍ୟ, ଚିନ୍ତା ଓ କବିତା ଭିତରେ ଅମୃତଧାରା ରୂପେ ରହି ତାଙ୍କୁ ଜୀବନ୍ତ ରଖିଛି; ତାଙ୍କର ସକଳ କବିତାରେ ସେ ବିଭୁପାଦକୁ ବାରମ୍ବାର ସ୍ମରଣ କରିଛନ୍ତି । ସେ ବିଭୁଭାବର ଉପାସନାରେ ଆତ୍ମବିସର୍ଜନ ଦେଇଛନ୍ତି ।" ଗୋପବନ୍ଧୁଙ୍କ ବିଷୟରେ ଏହି ମନ୍ତବ୍ୟ ଏକାବେଳେକେ ସତ୍ୟ । ପିଲାଦିନରୁ ତାଙ୍କଠାରେ ଆଧ୍ୟାତ୍ମିକତା ଦେଖା ଦେଇଥିଲା । ପିଲାଦିନେ ସେ ତାଙ୍କ ପିତାମହଙ୍କ ପ୍ରତିଷ୍ଠିତ ଭାଗବତ ଘରେ "ଭାଗବତ ସପ୍ତାହ" ବସିବା ସମୟରେ ଉପବାସ ରହି ହବିଷ୍ୟାନ୍ନ ଖାଇ ଭାଗବତ ପାରାୟଣ କରୁଥିଲେ । ଜଗନ୍ନାଥ ଦାସଙ୍କର ଭାଗବତ ତାଙ୍କ ବାଲ୍ୟଜୀବନରୁ ତାଙ୍କ ଉପରେ ବିଶେଷ ଭାବରେ ପ୍ରଭାବ ପକାଇଥିଲା । ତେଣୁ ତାଙ୍କର କବିତା-ମାନଙ୍କରେ ବିଭୁପ୍ରେମର ବହୁ ଉଦାହରଣ ମିଳେ । "ପ୍ରାର୍ଥନା"ରେ ସେ ଲେଖିଛନ୍ତି—

"ପ୍ରଭୁ ଦୟାମୟ ଜଗତ ପତି
ଅନାଥର ନାଥ ଅଗତି ଗତି
ତବ ଶ୍ରୀଚରଣେ ଏହି ବିନତି
କରୁଛୁ ଉତ୍କଳ-ଶିଶୁ-ସନ୍ତତି
ମିଳି ଆଜ ଏକ ମନେ ହେ,
ଦିଅ ନବତେଜ ନବୀନ ସାହସ
ଉତ୍କଳମାତା ଜୀବନେ ହେ ।"

ନିତ୍ୟଧାମ ନୀଳାଚଳରେ କବି ଲେଖିଛନ୍ତି—

"ନୀଳଚକ୍ର ତଳେ କେ କରିବ ବାସ
କେ ଦେଖିବ ନୀଳାଚଳେ ନିତ୍ୟରାସ
ବୋଲି ହରି ହରି
କେ ପ୍ରେମ-ଭିଖାରୀ
ପରାଣ ପୁଲକେ ତେଜିବ ନିଶ୍ୱାସ ?"

ବନ୍ଦୀର ସ୍ୱଦେଶ ଚିନ୍ତାରେ ପୁଣ୍ୟଧାମ ପ୍ରସଙ୍ଗରେ କବି ଲେଖିଛନ୍ତି—

"ପୁଣ୍ୟ ଗନ୍ଧବହ କର ଅନୁଗ୍ରହ
କହ ପ୍ରିୟ ପୁରୀ ସୁସମାଚାର,
କନ୍ଦର ନିବାସୀ ପ୍ରଭୁ ବ୍ରହ୍ମଚାରୀ
କରୁଛନ୍ତି ଏବେ କେଉଁ ବିଚାର ।

ଗମ୍ଭୀରରୁ କିବା ଶ୍ରୀମୁଖ ଆଦେଶ
ପଠାଇ ଅଛନ୍ତି ଦେବ ମୋ ପାଇଁ,

କହ ବେଗେ ବାୟୁ କ୍ଷୀଣ ହୁଏ ଆୟୁ
ରହିଥିବ କେତେ କାଳ ଅନାଇଁ ?"

ଏହିପରି ଅନେକ ପଂକ୍ତି ମଧ୍ୟରେ କବିଙ୍କର ବିଶ୍ୱପ୍ରେମ ସ୍ପଷ୍ଟ ଭାବରେ ପ୍ରକାଶିତ ହୋଇଅଛି । କବିଙ୍କର ଆଧ୍ୟାତ୍ମିକତା ଉପରେ ବିଶେଷଭାବରେ ବିଶ୍ୱାସ ଥିଲା । କବିଙ୍କର ବିଶ୍ୱାସ ଥିଲା ଯେ ଜାତିର ଆଧ୍ୟାତ୍ମିକ ବଳ ନ ବଢ଼ିଲେ ଜାତିର ଉନ୍ନତି ଅସମ୍ଭବ । ତେଣୁ ସେ ଜାତିକୁ ଆହ୍ୱାନ କରି ଜଣାଇଛନ୍ତି ଯେ ଦେଶବାସୀ ଆଧ୍ୟାତ୍ମିକ ଭାବଧାରାରେ ଉଦ୍‌ବୁଦ୍ଧ ହୁଅନ୍ତୁ । କବିଙ୍କର ଆଦର୍ଶ, ବିଶ୍ୱପ୍ରେମ, ବିଶ୍ୱପ୍ରେମ ପ୍ରତ୍ୟେକ ରଚନାରେ ଅଳ୍ପବହୁତ ଦେଖାଯାଏ ।

## (୮) ଓଡ଼ିଆ ସାହିତ୍ୟରେ ଗୋପବନ୍ଧୁଙ୍କର ସ୍ଥାନ :—

ଓଡ଼ିଆ ସାହିତ୍ୟରେ ଗୋପବନ୍ଧୁଙ୍କର ସାହିତ୍ୟ ସାଧନାର ବୈଶିଷ୍ଟ୍ୟ ଏ ପର୍ଯ୍ୟନ୍ତ ବିଶେଷ ଭାବରେ ଆଲୋଚିତ ହୋଇନାହିଁ । ଗୋପବନ୍ଧୁଙ୍କର କବିପ୍ରାଣ ଦେଶ ସେବାକୁ ଜୀବନର ବ୍ରତ ରୂପେ ଗ୍ରହଣ କରି ନେଇଥିଲେହେଁ ସେ ଦେଶର ପ୍ରତ୍ୟେକ ସ୍ତରରେ ଆଦର୍ଶବାଦ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଉନ୍ନତ ସାହିତ୍ୟ ସୃଷ୍ଟି କରିଅଛନ୍ତି । ରାଧାନାଥ ଯୁଗର ସାହିତ୍ୟ ସୃଷ୍ଟି ଜାତୀୟତାର ବିରୋଧୀ ବୋଲି ଯେତେବେଳେ ପ୍ରଚାରିତ ହେଲା, ସେତେବେଳେ ସତ୍ୟବାଦୀର ସାହିତ୍ୟିକଗଣ ଜାତୀୟତା-ଭାବର ସମ୍ପ୍ରସାରଣ ପାଇଁ ଚେଷ୍ଟା କରିଥିଲେ ।

ଗୋପବନ୍ଧୁ ପିଲାଦିନରୁ ଆଦର୍ଶ ଜୀବନଯାପନର ପକ୍ଷପାତୀ ଥିଲେ । ତେଣୁ ତାଙ୍କ ଲେଖାରୁ ଉନ୍ନତ ସାହିତ୍ୟ ପ୍ରକାଶ ପାଇବା

ନିତାନ୍ତ ସ୍ୱାଭାବିକ । ଗୋପବନ୍ଧୁ ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ରାଧାନାଥଙ୍କ ବିରୁଦ୍ଧରେ ଗୋଟିଏ କବିତା ଲେଖି ଦଣ୍ଡିତ ହୋଇଥିବା କଥା ସୁବିଦିତ । ରାଧାନାଥ-ସାହିତ୍ୟର ପ୍ରତିଷ୍ଠିତ ପରମ୍ପରାକୁ କ୍ଷୁଣ୍ଣ କରିବା ଉଦ୍ଦେଶ୍ୟରେ ଗୋପବନ୍ଧୁ ଲେଖନୀ ଚାଳନା କରିଥିଲେ ସତ, ମାତ୍ର ଉଗ୍ରଭାବରେ ରାଧାନାଥଙ୍କର ନିନ୍ଦାଗାନ ସେ କେବେ କରିନାହାନ୍ତି । ନୀଳକଣ୍ଠ ଯେପରି କଟୂକ୍ତି ସମାଲୋଚନାରେ ରାଧାନାଥ ସାହିତ୍ୟକୁ ନିନ୍ଦା କରିଛନ୍ତି ଗୋପବନ୍ଧୁ ସେପରି କରିନାହାନ୍ତି । ବରଂ ରେଳ ଉପରେ ଚିଲିକା ଦର୍ଶନ କବିତାରେ ଗୋପବନ୍ଧୁ ରାଧାନାଥଙ୍କର ପ୍ରଶଂସା ଗାନ କରିଅଛନ୍ତି । ଗୋପବନ୍ଧୁ ସଂକୀର୍ଣ୍ଣତାର ଯେ ବହୁ ଊର୍ଦ୍ଧ୍ୱରେ ଥିଲେ ଏ କଥା ଏହି ଗୋଟିଏ ଦୃଷ୍ଟାନ୍ତରୁ ପ୍ରମାଣିତ ହୁଏ ।

ଗୋପବନ୍ଧୁଙ୍କର କାବ୍ୟ କବିତା ସୃଷ୍ଟିରେ ତାଙ୍କର କବି-ପ୍ରତିଭାର ଅମର ନିଦର୍ଶନ ମିଳିଅଛି । ତାଙ୍କର ସାହିତ୍ୟ-ସୃଷ୍ଟି "କଳା ନିମିତ୍ତ କଳା" ସୃଷ୍ଟି ପର୍ଯ୍ୟାୟଭୁକ୍ତ ନୁହେଁ । ଏହା "ଜୀବନ ନିମିତ୍ତ କଳା ସୃଷ୍ଟି" ପର୍ଯ୍ୟାୟଭୁକ୍ତ । ସାହିତ୍ୟର ଉନ୍ନତ ସୃଷ୍ଟି ପର୍ଯ୍ୟାୟରେ ଜୀବନର ନିର୍ମଳ ବିକାଶ ଥିଲା କବିଙ୍କର ପରମଲକ୍ଷ୍ୟ । କେତେକ ସମାଲୋଚକ ମତପ୍ରଦାନ କରନ୍ତି ଯେ ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟିକଗଣ ଯଦି ଦେଶସେବା ବ୍ରତରେ ବ୍ରତୀ ନ ହୋଇ ଥାଆନ୍ତେ, ତେବେ ଓଡ଼ିଆ ସାହିତ୍ୟକୁ ଆହୁରି ଅଧିକ ଦାନ କରିବାକୁ ସମର୍ଥ ହୋଇ ଥାଆନ୍ତେ । ମାତ୍ର ଏପରି ମତରେ ଯେତିକି ଯାଥାର୍ଥ୍ୟ ଅଛି ସେତିକି ଅଯୌକ୍ତିକତା ମଧ୍ୟ ଅଛି । ଦେଶସେବା ବ୍ରତରେ ବ୍ରତୀ ନ ହୋଇଥିଲେ ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟିକ ଦାନ ଯେ ଏପରି ରୂପ ଗ୍ରହଣ କରିଥାଆନ୍ତା ଏହା ନିଃସନ୍ଦେହ ନୁହେଁ ।

ଗୋପବନ୍ଧୁ କବି ହିସାବରେ, ସାମ୍ବାଦିକ ହିସାବରେ, ସଂସ୍କାରକ ହିସାବରେ, ଦେଶସେବକ ହିସାବରେ ଅମର । ଓଡ଼ିଆ ସାହିତ୍ୟରେ ତାଙ୍କର ସ୍ଥାନ ଦେଶ-ପ୍ରେମମୂଳକ ସାହିତ୍ୟ ସୃଷ୍ଟି ଲାଗି ସ୍ୱତନ୍ତ୍ର ।



